କାଳ ପଡ଼ିଥିବା ବେଳେ ମାନେ ମହନ୍ତଙ୍କୁ କଥା କଏ ? କୋଉ ପ୍ରକାରେ ଜୀବନ ବଞ୍ଚେଇବା ଲାଗି ଛେଳ ମେଣ୍ଢାଙ୍କଠାରୁ ଶସ୍ତାରେ 'ଖ୍ଦୁପେଜ' ଗାଆଁର କପୂର ମାଝି ତା ବାଳୁତ ଝୁଅଟିକୁ କୋଡ଼ିଏ ଟଙ୍କାରେ ବିକଲା; ଧୁବେର ଗାଆଁର ବଣିଆ ଶବର ତା କଙ୍କାଳ ପୁଅଟିକୁ ଦଶ ଟଙ୍କାରେ ବିକଲା । ଜରଲ ପଡ଼ା, ଶିଆଳଲଟା, ମିଛପାଳ, କୁମନା ଗାଆଁର କେତେ କେତେ ଝିଅପୁଅ ବିକା ହୋଇ-ଗଲେ । ଦରଦାମ୍ କରିବାକୁ ଦମ୍ ପାଇଲା ନାହିଁ । ଯେ ଯାହା ଦେଲେ ନେଇ ଲୋକେ ପିଲା ଧରେଇ ଦେଲେ ।

ଯେ ମଲେ, ଯେ ବିଦେଶକୁ ପଳାଇଗଲେ, ତାଙ୍କ ଛଡ଼ା ଯେ ଅଛନ୍ତି, ତାଙ୍କୁ ଦେଖ ବାବୁ—ସମସ୍ତେ ଅକାଳେ ବୁଢା । ହାଡ଼କଙ୍କାଳ । ଆଉ ଚାଲିବୁଲି ପାରୁ ନାହାନ୍ତି । ତାଙ୍କୁ ଆଉ କଏ କାହିଁକି ପଇସା ଦେଇ କିଣିବ ? ବାଟରେ ମରିଗଲେ ପଇସା ବୁଡ଼ିବ ନା ନାହିଁ ?

ମୋ ଝିଅ ବେଲମତି, ପାଚିଲା ବେଲ ପରି ଗୋଲ୍ ତାର ମୁହଁ । ସେତେ ଧଡ଼ିଆ ନେକେଡ଼ା ହୋଇ ନ ଥିଲା । ତାକୁ ସାଙ୍ଗରେ ଘେନି ମୁଁ ଶାଗ, ଅନାବନା ପତର ଏଠୁସେଠୁ ତୋଳି ଆଣି ଖରଡ଼ି ଖାଇ କୌଣସି ମତେ ପେଟ ପୂରଉଥିଲି । ଗୋରୁଗାଈ, ମେଣ୍ଢାଛେଳିଙ୍କ ଦାଉରୁ ସେ ବି ଶେଷ ହୋଇଗଲା ।

ବିଧାତା କାହିଁକି ଆମକୁ ହୀନଜନମ ଦେଲା ? କାହିଁକି ଏତେ ହୀନସ୍ତା କରି ମାରୁଚି ବାବୁ ?

କାହାର କି ଅନିଷ୍ଟ କଲୁ ? କାହିଁକି ଧୋବଧବଳିଆ ବାବୁମାନେ ଆମ ଗାଆଁକୁ ଆସି ଗୋଇଠା ମାରି ଆମ ଭାତ ହାଣ୍ଡି ଭାଙ୍ଗିଦେଲେ ?

ପେଟଦାଉ ସମ୍ଭାଳି ନ ପାରି ମୋ ଝିଅକୁ ମୁଁ ବିକିଲି । ଏଥିରେ କାହାର କଣ ଗଲା ?

ଖାଇବା ବିନା ମରହଜିଗଲେ ତ କେହି ବାସି ମୁହଁରେ ପଚାରୁ ନଥିଲେ, ଏବେ କଣ ହୋଇଗଲା ?

କେତେ ତ ପିଲାଝିଲା ବିକି ଚଳିଲେ, କାହା ବେଳକୁ କିଛି ହେଲାନାହିଁ, ମୋ ବେଳକୁ କାହିଁକି ଚହଳ ପଡ଼ିଗଲା ବାବୁ ?

ମୋର କ'ଣ ଭୁଲ୍ ହୋଇଗଲା ?

ଭୁଣ୍ଡାଭୁଣ୍ଡି ହୋଇ ଓପାସରେ ମାଆ ଝିଅ ଦିହେଁ ମରିଥାନ୍ତୁ, ସେ କେମିତି ଭଲ ହୋଇଥାନ୍ତା ?'

'ଆଜ୍ଞେ ସୁନ୍ଦରମଣି, ଏଠା ଲୋକେ କି ଦୁଃଖରେ ଅଛନ୍ତି, ମରଣ ଦୁଆରକୁ କେମିତି ଗୋଟି ଗୋଟି ଟଣା ହୋଇ ଯାଉଛନ୍ତି, ସବୁ ଦେଖୁଛୁ ।

ହେଲେ ମାଆ ହେଇ କେମିତି ତୁ ମୁବୁଛୁଲୁ ? ଏଡ଼େ ଅଲାଳୀ ଯୁବତୀ ଝିଅକୁ କାହାକୁ ବିକିଲୁ ?'

କାହୁଁ କାହୁଁ ବେପାରୀ ଆସି ଦୁଆରୁ ମେଣ୍ଢା ଛେଳି କିଣି ନଉଛନ୍ତି । ହେଲେ ମଣିଷ ଲାଗି ଗରାଖ ମିଳିବା ସହଜ କଥା ନୁହେଁ ।

ବେଳକୁ ବିକିବା ଲାଗି ମତେ ନାକେଦମ୍ ହେଇଚି । ପୁଲିସ୍ ଭୟରେ ଭବାନୀପାଟଣାରେ କେହି କିଣିଲେ ନାହିଁ । ମତେ ଖଡ଼ିଆଳ ଦୌଡ଼ିବାକୁ ହେଲା । ଡାଲଭଙ୍ଗା କୋଡ଼ିଏ କୋଶ ବାଟ । ମାଗିଯାଚି ଖାଇ ବସିଉଠି ଯାଇ ମା' ଝିଅ ଦି ଦିନରେ ପହଞ୍ଚିଲୁ ।'

'ବେଳକୁ କିଏ କିଣିଲା, କେତେ ଟଙ୍କାରେ ?'

'ନାଆଁ କହିବାକୁ ସେ ମନା କରିଚି, ବାବୁ । ତାକୁ ଚହ୍ନି ଜାଣି କି ଲାଭ ? ମୋ ଝିଅକୁ କଣ ମୁଁ ଆଉ ମୁକୁଳାଇ ପାରିବି ? ସେ କଣ ଆଉ ଫେରାଇବ ?'

'ସେ ଯଦି ବିକିଦବ ?'

'ସେଥିକି ମୋର କି ବଳ ? ତା ଜିନିଷ; ତେଣିକି ସେ ଯାହା କରୁ । ସେ ଘରେ ରଖିଲା କି କାହାକୁ ବିକିଲା, ଦେଖିବାକୁ ମୁଁ କଣ ସେଠି ଥିବି ? ତେବେ ଏତିକି ମୋର ଦମ୍ଭ ଯେ ମୋ ଝିଅ ମୁଠିଏ ଖାଇ ବଞ୍ଚି ରହିବ । ତେଣିକି ତା ଇଷ୍ଟ, ମୋ ଝିଅର ଭାଗ୍ୟ । ତାପରେ ମୁଁ ମରେଁ ବା ସରେଁ ।

ଏ ଛୁଞ୍ଚୁକର ଜୀବନ ଧରି ଆଉ କି ଲାଭ ? ସ୍ୱାମୀ ନାହିଁ । ପିଲାଝିଲା ନାହାନ୍ତି । ସଂସାର ଭାଙ୍ଗିଚି, କୂଳ ବୁଡ଼ିଚି ।

ଥୁଣ୍ଟା ଗଛଟାଏ ମରୁଚି ତ ମରିଯାଉ । ସେଥିଲାଗି ଆଉ କାହାର କି ଭାବନା ?'

ଏତିକି କହିଲା ପରେ ସୁନ୍ଦରମଣିର ମୁହଁ କାଦଲ ପରି ଦିଶୁଥିଲା, କିନ୍ତୁ ଝରିବାକୁ ଲୁହ ବା ରକ୍ତ କିଛି ନ ଥିଲା ।

ହାଡର ଚମଡ଼ା ହଟିଣ୍ଡି ହାଡରେ ମିଶି ଯାଉଥିଲା । ଦିଶୁଥିଲା କେବଳ ବେଣ୍ଟ ଦୁଇଟି, କଳା କଳା ପୋଇ ପଣସର ଶୁଖିଲା ଡେମ୍ପ ପରି ।

ଏ ସ୍ତ୍ରୀ ନା ପୁରୁଷ ? ବାରିବା ଲାଗି ପଦାକୁ କିଛି ହେଲେ ସଙ୍କେତ ନ ଥିଲା ।

ଗୋଟାଏ ପଟେ ଉଡ଼ୁଥିଲା ମୁଣ୍ଡ, ଆରପଟେ ପୁଲ୍ୱ । କୋଉଟା ଭଲ କୋଉଟା ସଲ, ସୁନ୍ଦରମଣି ବୁଝିପାରୁ ନ ଥିଲା ।

ସୁନ୍ଦରମଣିର ଏ ସ୍ୱପ୍ନଅବସ୍ଥା ଦେଖି ଭାବୁଥିଲି—ଏ କଣ ସ୍ୱାଧୀନ ଭାରତର ଝିଅଟିଏ ?

ଏ ଦେଶରେ ପେଟ ବିକାଇଲେ ଦୋଷ ନାହିଁ ?

ମୁଣ୍ଡ ବିକିଲେ ଦୋଷ ନାହିଁ ?

ଇଜ୍ଜତ ବିକିଲେ ଦୋଷ ନାହିଁ ?

ମଲେ ଦୋଷ ନାହିଁ ?

ଜୀବନ ବଞ୍ଚେଇବା ଲାଗି ଏ ହାତରୁ ସେ ହାତକୁ ପିଲାଟିଏ ଗଲେ ଦୋଷ ! ମଣିଷକୁ ହୀନମାନ କରିବା ଲାଗି ତୁମେ କି ଖିଆଲ ପ୍ରୟୋଗ କରନାହିଁ ହେ ସମ୍ରାଟ, ରଜା, ଜମିଦାର, ସାହୁକାର, ମକଦ୍ଦମ, ସାଆନ୍ତ, ସର୍ବରାକାର, ସର୍ଦ୍ଦାର, ପୁଞ୍ଜିପତି, କାନ୍‌ଟ୍ରାକ୍ଟୀ, ଠିକାଦାର ଓ ଖିଆଲି ସରକାରମାନେ । ତୁମ ଅନ୍ୟାୟ ଅବସ୍ଥାର ଦାସବ୍ୟବସାୟ ଓ କଣ୍ଠାବୁ ମଣିଷବିକା ବେପାରରୁ କି ପାଇ ଊଣା ?

ତୁମେ ହାତରେ ନ ମାର ଭାତରେ ମାର ।
ପିଠି ଆଉଁସି ଚମ ଉତାର ।
ଚଇତନ ନ ମାର କଲଜା କାଟ ।

ଆଖିରେ ଆଙ୍ଗୁଠି ଗେଞ୍ଜି ଫୁଟାଇ କାହିଁକି ଏବେ କୁମ୍ଭୀର କାନ୍ଦଣା କାନ୍ଦ ହେ ମଣିଷପଣ ଦେଖେଇ ହଉଥିବା ଗ୍ରାବ୍ରହ୍ମମାନେ ।

ପୃଥିବୀର ସୁନ୍ଦରବନ୍ତ, ସୁନ୍ଦରମଣିମାନଙ୍କ ଲଲାଟଲିପି ଲିଭାଇ କି ଭାଗ୍ୟ ଖଞ୍ଜିଚ ହେ କୁହାମୁଣ୍ଡା କପିଳାମାନେ ।

ଭୋକ ହେଲେ କେମିତି ଲାଗେ ? କେମିତି ?

ଯତ ବୁଦ୍ଧିପାଡୁଆନ୍ତ, ଭୋକ ନ ହେଉଁ ଖାଉଥିବା, ଅଳସ ହାଇ ମାରି ସବୁ କଥାକୁ ଫୁଙ୍କରେ ଉଡ଼ାଇ ଦେଉଥିବା, ତା ଜଙ୍ଗଲମାଆକୁ ମାରି ତାକୁ ହାଟ୍‌ ବଜାରରେ ଦରଦାର କରୁଥିବା, ଭାରତର ଇଜ୍ଜତ ବାନା ଉଡ଼ାଇବା ଲାଗି ତା ଇଜ୍ଜତକୁ ବୁଟ୍‌ ତଳେ ଚପି ଦଉଥିବା ହେ ସବାଖିଆମାନେ;

ପୁଷ୍ଟିହୀନତାରୁ ମରିଚ, ଅଖାଦ୍ୟ ଖାଇ ମରିଚ, ରୋଗରେ ମରିଚ ବୋଲି କହିବାକୁ ତୁମ ଜିଭ ଲେଉଟୁଚ କେମିତି ?

ମାଣ୍ଡିଆ ପେଜ, ହାଣ୍ଡିଆ ଖାଇ ଆନନ୍ଦରେ ପାହାଡ଼ି ଗାଆଁରେ ନାଚୁଥିବା ଏ ପ୍ରକୃତି ପୁତ୍ରକନ୍ୟାମାନଙ୍କର ସୁଖଶ୍ରୀ କାହିଁକି ହରଣ କଲ୍‌ କହିଚ, କୈଫିୟତ୍ ଦେବ କି ହେ, କଥାଁ ଗିଳା, ବାହାଘିଆମାନେ ?

# ଶାସ୍ତି ନା ପୁରସ୍କାର ?

ପାଞ୍ଚବର୍ଷ ଜହଲ ଖଟିଲା ପରେ ଆଜ ଚଢ଼େଇମରା କାଳକେତୁ ଖଲାସ୍ ହେଲା । କି ଅପରାଧରେ ତାକୁ ଜେଲ୍ ଦିଆଗଲା, ସେ ବୁଝି ପାରୁ ନ ଥିଲା । ସେ ଭାଗ୍ୟ ଦୋଷରୁ ଦଣ୍ଡ ପାଇଛି ବୋଲି ଭାବୁଥିଲା ।

ଯୋଉ କାମ ଜୀବନରେ କେବେ କରିନାହିଁ, ସେଇ କାମ ତାକୁ ଦିଆ ହେଉଥିଲା—ଘଣାପେଲା, ଚକିପେଷା, କୋଡ଼ିହାଣା, ପାଣିବୁହା । ତାକୁ ବଡ଼ କଷ୍ଟ ଲାଗୁଥିଲା, ଠେଲାପେଲାରେ ସେ ସବୁ କାମ କରୁଥିଲା, ନଇଲେ ପିଠିରେ ବୁଟ୍‌ମାଡ଼ ବାଜୁଥିଲା ବା ଅଧାପେଟ ଖାଇବାକୁ ଦିଆ ହେଉଥିଲା ।

କେତେ ଭାବୁଥିଲା—ଭାବୁଥିଲା । କିଛି କୂଳ କିନାରା ପାଉ ନ ଥିଲା । କଣ ତାର ପାପ ? କାହିଁକି ଏ ଶାସ୍ତି ?

'ମୁଁ ବଣବୁଦାରେ ବୁଲେ, ପକ୍ଷୀ ମାରେ । ତୁମେ ମଣିଷ ଚରାଅ । ମୋ କଥା ଟିକିଏ ଧାନ ବିଚାର କର । ମୋ ଭୁଲ୍ ବତାଅ । ମୁଁ ଅମାନିଆଁ ନୁହେଁ, ଗାଳୁଆ ନୁହେଁ, କାଇଲି ହେଲେ ମୁଁ ମାନିଯିବି ।

ଦୋଷ କରିବ ଜଣେ, ଦଣ୍ଡ ପାଇବ ଆଉ ଜଣେ । ଦିନେ ନୁହେ, ମାସେ କି ବର୍ଷେ ନୁହେ, ଲଗ୍ ଲଗ୍ ପାଞ୍ଚ ବର୍ଷ !

ହଉ ମତେ ତ ଯାହା କଷ୍ଟ ଦେଲ, ଦେଲ; ମୋ ପିଲାଏ ତମର କି ଅପରାଧ କରିଥିଲେ ?

ଘରେ ତ ଦିଟା ବଢ଼ିଲା ଝିଅ; ସ୍ତ୍ରୀର କଙ୍କାଳ ଗଣିହୋଇ ଯାଉଥିଲା । ଘରେ ଆଉ କିଏ ରୋଜଗାରିଆ ଥିଲା ? ସେମାନେ କଣ ଖାଇଲେ, କେମିତି ଚଳିଲେ ? ଲୁଣ୍ଡିଆ ବଗରକ ଛପର ଅଗ୍ରବରୁ ଖୋଇପଡ଼ିଲା ନା ନାହିଁ ?

ଓହୋ, ମୋ ମନ କଣ୍ ହୋଇଯାଉଛି ! କେହି ଜଣେ ହେଲେ ଖବର ନାହିଁ—ସେ ତ ଜେଲ୍‌ରେ ବନ୍ଦୀ ହୋଇ ରହିଲା । ତା ପିଲାକବିଲା ଚଳିବେ କେମିତି ? ଏ ସଂସାରରେ ନ୍ୟାୟ ଆଉ କାହିଁ ? ଯୁଆଡ଼େ ବଡ଼ଲୋକ, ସେଆଡ଼େ ନ୍ୟାୟ, ଯୁଆଡ଼େ ଟଙ୍କା, ସିଆଡ଼େ ବିଚାର ।

ବାରବୁଲା ଜୀବନ ମୋର । ଦିନେ ଘରେ ବସିଲେ ମତେ ବିଷପରି ଲାଗେ । ବୁଲେ ଗୋଧନ ପଡ଼ିଆରେ, ଗସ୍ତିର ବିଲରେ ବା ଗୋହିରି ଦାଣ୍ଡରେ, ତୋଟାବାଡ଼ିରେ ବା ପାହାଡ଼ କନାରେ କମ୍ବା ନଈ, ନାଳ, ହ୍ରଦ, ପାଣିଚୁଆ, ଚଉତରା ବା ସନ୍ତସନ୍ତିଆ ଅପନ୍ତରାରେ । ମାରେ କପୋତା, ବଣକୁକୁଡ଼ା, ହଂସରାଲୀ, କାମ, ହରଡ଼, ଚକୁଆ ଚକୋଇ, ନନ୍ଦା, ବଢ଼ିଆ କାଙ୍କ ବା କୋଚିଲାଖାଇ, ବାଦୁଡ଼ି—ଯୋଉ ପକ୍ଷୀର ମାଉଁସ ବାବୁମାନେ ଖାନ୍ତି ବା କାଶ ଶ୍ୱାସ, ବାତ ଆଦି ରୋଗ ଭଲ କରିବା ପାଇଁ ଯାହା ମାଉଁସରେ ଔଷଧ ତିଆରି ହୁଏ ।

ଯୋଉ ଇଚ୍ଛା ସେ ଚଢ଼େଇ ମୁଁ ମାରେନାହିଁ । ସେ କେଳା ବା ସବାଖିଆଙ୍କ କାମ । ସେମାନେ ନ ଖାଆନ୍ତି କଣ ? କାଣ୍ଡିଆବଗ, ମାଟିଆଚଲ, ଫୁଲଶାଗୁଣା ଡାମରାକୁଆ ବି ବାଦ୍ ପଡ଼ନ୍ତି ନାହିଁ ।

ମୋ ସାଥୀ ଏଇ ନଳୀ ବନ୍ଧୁକଟି । ପିଠିରେ କଣ୍ଢା ଦେବଦାରୁ ପତରର ଏଇ ଘୋଡ଼ଣି । ଦଳେ ଚଢ଼େଇ ଚରୁଥିବାର ଦେଖିଲେ ସ୍ୱାକୁ ପିଠିରେ ପକାଇ ହିଡ଼ଉପରେ ଘୁଷୁରି ଘୁଷୁରି ଯାଏ । ଟିକିଏ ଖସ୍ ଖାସ୍ ହେଲେ, ଜୋର୍‌ରେ ନିଃଶ୍ୱାସ ଛାଡ଼ିଲେ କି ଗୋଟେ କାଶିଦେଲେ ଶିକାର ଉଡ଼ନ୍ତୁର୍ । କାଶୁଆ, ଧୂଇଁଆଙ୍କ ଦେହ ଏ ଧନ୍ଦା ହୁଏ ନାହିଁ ।

ଚଢ଼େଇ ଖୁବ୍ ଚରକା ହେଲେ ବି ମଣିଷର ଚରକାପଣ ତାକୁ ବଳେ ? ଘାସଣା ହିଡ଼ ପରି ଦୂରକୁ ଦିଶେ, ସ୍ୱା ତଳେ କାଳଯମ ଲୁଚି ଲୁଚି ପାଖକୁ ଲାଗି ଆସିଲାଣି ବୋଲି ମୋଟେ ଜାଣି ପାରେ ନାହିଁ । ହଠାତ୍ ଫୁଟେ ଡୁ । 'କଣ ହେଲା', 'କଣ ହେଲା' କହି କହି ଚଢ଼େଇସବୁ କଲବଲିଆ ହୋଇ ପ୍ରାଣ ବିକଳରେ ପଳାଇ ଯାନ୍ତି, ବାଟବଣା, ଗୋଠଛଡ଼ା । ତା ଭିତରୁ ଟଙ୍କି ପଡ଼ନ୍ତି କେଉଁଟା । ସେ ସବୁ ବ୍ୟାଗ୍‌ରେ ଭର୍ତ୍ତିକରେ, ଯାଇ ଯାଇ ବୁଲି ବଳେ । ସନ୍ଧ୍ୟାପରି କରି ଘରକୁ ଫେରେ । ମୋର ନିତିଦିନିଆଁ ଧନ୍ଦା ଏ । ମୋର ଦାଣ୍ଡରୁ ଆସେ, ହାଣ୍ଡିରେ ପଶେ । ହାତ ବଢ଼ାଇବାକୁ ଘରେ ବା ବାଡ଼ିରେ ଆଉ କିଛି ନାହିଁ ।

ବଖୁରିଏ ବୋଲି ଘର । କି କାମ ? ଘରଣୀ ଦାଣ୍ଡ ପିଣ୍ଡାରେ ବସି ଏକ ଆଖିରେ ମୋ ଅଇଲା ବାଟକୁ ଚାହିଁ ବସିଥାଏ ।

ଦିନଯାକ ଦୌଡ଼ି ଦୌଡ଼ି ମୋ ଗୋଡ଼ରୁ ବାକୁଲି ବାହାରେ । ଘରେ ତିନି ପ୍ରାଣୀ କୁଟୁମ୍ବଙ୍କୁ ଗଣ୍ଡିଏ ଦାନା, ଖଣ୍ଡିଏ କନା ଯୋଗେଇଲା ବେଳକୁ ମୋ ଦଫା ଶେଷ ।

ଝିଅଦିଟା କେମିତି ହାତକୁ ଦି ହାତ ହେବେ, ଖାଇବାକୁ ମୋର ବେଳ ନାହିଁ ? ଖାଇ ବସିଲେ ବା କଣ ହୁଅନ୍ତା ? ଠିକ ଜାଗା ପାଞ୍ଚ ଜାଗା ଯାଇ ପାଞ୍ଚ ବୁଝିବା ଦରକାର । ଦିନେ ଶିକାରକୁ ନ ଗଲେ ତ ପେଟରେ ଓଦାକନା ଦେଇ ଶୋଇବା କଥା । ଆଗେ ପେଟ ନା ଏ ନାଟ ? ସେ କଥା ବୁଝୁଚି କିଏ ? ଖାଇଯା କଣ ବସେଇ ଉଠେଇ ଦଉଛୁ ନା ସାଇପଡ଼ିଶା ରଖେଇ ଥୋଇ ଦଉଛନ୍ତି ?

ହେଲେ କଣ କରିବ ? ଶିକାର ବିକି ଗଲାବେଳେ ତ ଖାବଖାବୁସୀଙ୍କି କହିପୋଛି ଆସୁଚି । ଘରକୁ ଗଲେହିଁ ଘରୁଆମାନେ ମୁହଁ ମୋଡ଼ି ଦଉଛନ୍ତି । ମୋ ବେଉସା କଥା ଶୁଣି ନାକ ଟେକୁଛନ୍ତି । ଚଢ଼େଇମରାର କି ମାନମର୍ଯ୍ୟାଦା ଅଛି ? ବନ୍ଧୁ ବାନ୍ଧବ କୁ କିଏ ଖଜ ହବ ? ସମାସ୍କନ ବନ୍ଧୁଟିଏ ମିଳୁଛି ନାହିଁ ?

ଖଜ ହୋଇଗଲେ ବି କି ଯାକଯଉତୁକ ଦେବ ? ଝିଅମାନେ ନାକ କାନରେ ଲମ୍ବକାଠି ଲଗେଇ ଶାଶୁଘରକୁ ଯିବେ ? ଖାଇ ବସ୍ତ୍ରଦରଙ୍କୁ କି କମିତା ଦେଇପାରିବ ? କଣ ଶୂନ୍ୟରେ ସବୁ ହୋଇଯିବ ?

ବଡ ଆଶ୍ଚର୍ଯ୍ୟ ଲାଗେ—ଭଗବାନ୍ କଣ ଏ ସବୁ ଜାଣନ୍ତି ନାହିଁ ? ଯାହାର ପୋଷିବାକୁ ବଳନାହିଁ, ତା ଘରେ ଝିଅ ଦିଅନ୍ତି କେମିତି ? ହଁ, ଦେଲେ ଯଦି ତାକୁ ହାତ କର୍ମ ଦେବା ଦରକାର—ତା ହେଲେ ଅ.ଖି ପଡ଼ୁ ପଡ଼ୁ ଯିଏହେଲେ ଝିଅକୁ ବୋହୂକରି ନିଅନ୍ତା । ତା ଯଦି ନ ହେଲା, ମୁଁ ବାପ ହୋଇ ଝିଅକୁ ଯୋଉଠି ଇଚ୍ଛା ସେଠି ଗୁଞ୍ଜିଦେଇ ଆସିବି କେମିତି ?

କିଛି ସିନା ନାହିଁ । ମୋର କଣ ମାନମର୍ଯ୍ୟାଦା ନାହିଁ ? ଦେଖିଶୁଣି ତ ଯୋଉଠି ଦେବି । ଯେତେ ଖଟିବି ଖଟୁ ପଛକେ ଝିଅ ପେଟପୂରି ମୁଠିଏ ଖାଇବାକୁ ପାଇବା ଦରକାର । ଟିକି ଦଦରି ପିନ୍ଧିଲେ କି ଓପାସ ଭୋକରେ ରହିଲେ ମୋତେ କାଟିବ, ସର୍ମିବ । ଏ ହୀନଅବସ୍ଥା ବାପ ହୋଇ ମୁଁ ଦି ଆଖିରେ ଦେଖିପାରିବି ନାହିଁ ।

ମୁଁ ଅଚଳ ପକ୍ଷକୁ ଦେବିନାହିଁ । 'ଝିଅ ଜିଅ, ବେଶୀକାଳ ରଖି ନୁହେଁ', ଏଥିରେ ମୋ ମତ ନାହିଁ । 'ଦେଲା ନ.ଖି ହେଲା ପାର' ହେବା ଅପେକ୍ଷା ଝିଅକୁ ଅବିହାଡ଼ୀ ରଖିବା ବରଂ ଭଲ ।

ନା, ନା, ସେ କଥା କଦାପି ହବନାହିଁ—ମୁଁ ବୁଢ଼ା ହଡ଼ାକୁ ଦେବିନାହିଁ, ଯେତେଦିନ ପାରିବି, ପୋଷିବି, ମଲେ ଗଲା । ତେଣିକି ତାଙ୍କ ଭାଗ୍ୟ ସେ ଭୁଞ୍ଜିବେ । ଥାନ୍ତୁ ଯେମିତି ଅବିହାଡ଼ୀ, ରହନ୍ତୁ, ଯେତେକାଳ ଯୋଗ୍ୟ ପାତ୍ର ନ ଜୁଟିଛନ୍ତି ।

କହନ୍ତି—ଭାଗ୍ୟ ପରା କୁଆଡ଼େ ଟାଣି ନେଇଯାଏ । ଅଉର କହନ୍ତି—ଯେ ଯାହା ହାଣ୍ଡିରେ ଚାଉଳ ପକେଇଥିବ । ଦେଖିବା, ଏ କଥା କେତେ ସତ ।

ଯୋଉ ବହ୍ମବିଧାତା ଏଡ଼େ ସୁନ୍ଦର ରୂପ ଦେଇଛି, ସେ ତାକୁ ରହିବି ବର ଖଞ୍ଜି ନ ଥିବ ? ହଉ, ହଉ, ଅସ୍ଥ ଧର । ବେସ୍ତ ବିକଳ ହେଲେ କୋଉ କଥା ହୁଏ ? ହେଲେ ଏ ମାଇପ ମୂର୍ତ୍ତିକ କଣ ଟିକିଏ ଅସ୍ଥ କରି ଦେଉଛି !

କେତେ ଲୋକ ଦେଖେଇ ଦେଖେଇ କହୁଚନ୍ତି—'ଏ ଚଢ଼େଇ ମାରିବା କୁଆଡ଼େ ଭାରି ପାପ । ଚଢ଼େଇ ବଂଶ ବୁଡ଼ିଉଚି । ମୋର ଭଲ ମଙ୍ଗଳ ହବନାହିଁ । କୁଳ ବୁଡ଼ିବ ।'

ସେମିତି ବୁଝିଲେ କେଉଁଟ କଣ ମାଛର ବଂଶ ବୁଡ଼ଉ ନାହିଁ ? କଂସେଇ ଗୋରୁ, ଛେଳି, ମେଣ୍ଢା ମାରୁନାହିଁ ? ତାଙ୍କର କଣ ଭଲ ମଙ୍ଗଳ ହଉନାହିଁ ? ତାଙ୍କ ପୁଅଝିଅ କଣ ବଞ୍ଚିତୋଳା ହଉନାହାନ୍ତି ?

ଆରେ ବାବୁ, ଆମେ କଣ ଖାଲି ମାରିବା ଲଗି ଜିବହତ୍ୟା କରୁଚୁ ? ତୁମେସବୁ ଖାଉଚ ବୋଲି ଆମେ ସିନା ମାରୁଚୁ ! ନଇଲେ ଆମର କ କଣ୍ ? ଆମେ ତ ଭିନେ ଧନ୍ଦା ଧରିଥାନ୍ତୁ ।

ଏଥିରେ ପାପ ହେଲେ ସମସ୍ତଙ୍କର ହବ, ଏକା ଆମର କାହିଁକି ? ଜୀବନ ବଞ୍ଚେଇବା ଲଗି କିଏ କେତେ ଧନ୍ଦା କରୁଛନ୍ତି । ସେମିତି ଆମର ଏ ଶିକାର ଧନ୍ଦା, ଏଥିରେ ପାପ ନାହିଁ ।

ବାବୁ, ଖାଇପିଇ ଏତେ ଯେ ହେଣ୍ଡି ମାରୁଚ, କାହା ସକାଶେ ? ମୋରି ପରି ଲୋକଙ୍କ ସକାଶେ । ନଇଲେ ଏ ଚଢ଼େଇ ବଣ ବଢ଼ି ସଂସାରର ସବୁ ଫସଲ ବରବାଦ୍ କରି ଦିଅନ୍ତେ ।

ଆମ ଲଗି ଫସଲ ପୋକ ଲାଗେନେ ବୋଲି କେତେଲୋକ ଯାହା କହୁଚନ୍ତି, ତାହା ଭୁଲ୍ ମିଛ । ଆମେ କଣ ଘରଚଟିଆ, ଗୋବରା, ଦୁକାଲିକା, ବଣି, ଶୁଆ, ହଳଦି ବସନ୍ତ, କେଳାଡ଼େଆ, କୁଣ୍ଡାଖିଆ ପକ୍ଷୀ ମାରୁ ? ତୁମେ ଚେଲଟି ବିଷାନ୍ ଓଷଦ ପକାଇ ଚଢ଼େଇ ବଣ ନିପାତ କରୁଚ । ଆମେ ନୁଆଁଣିଆଁ ହୋଇଥିବାରୁ ଆମ ମୁଣ୍ଡରେ ଦୋଷ ବୋଳୁଚ ! ନଇଲେ କେବେହେଲେ ତୁମ ତୁଣ୍ଡ ଲେଉଟନ୍ତା ନାହିଁ ଏ କଥା କହିବାକୁ ।

ଆମର ଏ ଚଢ଼େଇମାନଙ୍କ ସାଇଟା ଦେଖୁଚ ବାବୁ ? ଘରକରୁ ବଢ଼ି ବେଶି ଘଚ, ଯାଇକରୁ ପଞ୍ଚଲୋକ ହେଉଛନ୍ତି । ଏ ଲୋକେ ଚଢ଼େଇମାନଙ୍କ ଧନ୍ଦା

ଗୁଣ୍ଡିଆନ୍ତେ କି ନାହିଁ, ଆପେ ଆପେ ଗୁଣ୍ଡି ହୋଇଗଲ । ବଣରୁଦା ଆଉ କାହିଁ ? କେତେ କେତେ ଚଢ଼େଇ ବଂଶ ଗୁଁ ତ ଲୋପ ପାଇଗଲ । କୋଉଠି ଗୋଟେ ହେଲେ ଦେଖିବାକୁ ମିଳେନାହିଁ, ଖାଲେ ଦୁଃଖ ଲାଗେ ।

ଏବେ ଆମ ଘାଇର ପୁରୁଷଙ୍କ ଭିତରୁ କେତେ ହୋଇଛନ୍ତି ମିସ୍ତ୍ରୀ, କେତେ ରଙ୍ଗ୍ ଲଗାଉଛନ୍ତି । କେତେ କାରଖାନାରେ କାମ କରୁଛନ୍ତି । ଏକା ମୁଁ ଏ କାମ କରୁଚି । ପିତୃପୁରୁଷର ଧନ୍ଦା ମୁଁ ଗୁଣ୍ଡି ପାରନାହିଁ । ଆଉ କୋଉ କାମ କରିବ ଜାଣେନାହିଁ । ଜୀବନରେ ମୁଁ କାହାର କିଛି କ୍ଷତି କରିନାହିଁ । ପରର ଅମଙ୍ଗଳ ପାଞ୍ଚିବାକୁ ମୋତେ ବି ବେଳ ନ ଥାଏ । ମୋ ଶିକାର ଭଲ ତ ମୁଁ ଭଲ । ଏତିକ ଭଲକୁ ଭେଳ କରିଦେବାକୁ ଲୋକେ ବାହାରୁଛନ୍ତି, ଆଶ୍ଚର୍ଯ୍ୟ ।

ଘୁଞ୍ଚୁରିଆର ମୁଁ କଣ କରିଥିଲି ? ସେ କାହିଁକି ମୋ ବଢ଼ିଲା ଝିଅର ବାଟ ଓଗାଳିଲା, ତା ଗାଧୁଆ ଘାଟରେ ଜଗି ବସିଲା ?

କେତେ ଥର ସ୍ତ୍ରୀ ତା ହାତରେ ଖବର ଦେଲି—ଆରେ, ମୋ ସାଙ୍ଗରେ ଲାଗ୍‌ନା । ତୋ ସାଙ୍ଗରେ ଯୁଝିବାକୁ ମୋର ବେଳକାଳ ନାହିଁ, ବଳ ନାହିଁ । ମୋ ଝିଅକୁ ବିଭା ହବୁ ତ, ତୋ ବାପକୁ କହ, ମୋ ସାଙ୍ଗେ ଆସି କଥାଭାଷା କରୁ । ଘରର ପର ଲୁଚି ଲୁଚି ଆସୁଚୁ, ଯାଉଚୁ କାହିଁକି ?

ମୁଁ ଯେତେ ଗରିବ ହେଲେ ବି ମୋର ତ ଫେର୍ ମାନ ଇଜ୍ଜତ ଅଛି ? ତା ଉପରେ ଆଞ୍ଚ୍ ଆସିଲେ ମୁଁ କାହାର ଲୁହେଁ, ଜାଣିଚୁ ନା ନାହିଁ ? ହଁ, ଆଗରୁ କହିଦେଲି—ହୁସିଆର୍ ।

ଦୁଷ୍ଟ ଲୋକକୁ ଶିଷ୍ଟ ବଚନ ରୁଚେ କୋଉଠି ? ସେ ଓଲଟି ଜଣ ମୋଡ଼ିଲା—ଗୁର ମଶାଣୀଟାଏ, ଏ ମୋର କଣ କରିବ—ଫୁ······

ଦେଖୁ ଦେଖୁ ଦିନକୁ ଦିନ ବେଶୀ ଉଦ୍ଭବାର୍ଯ୍ୟ ହେଲା । ମୋ ଝିଅର ଘିଅ ପାଇଲେ ତା ଚଉଦ ପୁରୁଷ ଉଦ୍ଧାରିଲା । ସିଆଡ଼କୁ ଠିକଏ ହେଲେ ଜାଣେ-ଇଲା ନାହିଁ, ସେ ବେହିଆ, ଢଳଠା, ଅଲାଜୁକ ।

ଏମିତି କାମ କରି ତା ମୁହଁ ପାଇଗଲାଣି । ବୋପା ଠାକୁରାଣି ଯେତେ ପଚାଶ ଭିଆଏ, ପୁଅ ସବୁ ଜଳପାନ କରିଦିଏ । ଗୋଟିଏ ବୋଲି ଗେଲବସରିଆ ପୁଅ । ବାପା ତାକୁ ଆକଟ କରେନାହିଁ । ସେ ଅଷ୍ଟ ପ୍ରହର ଉଆଁମାରି ବୁଲୁଥାଏ ।

କାପ୍ତା, ହଂସବ୍ରଜୀ କେରୁଟା ପିଠିରେ ଝୁଲୁଛନ୍ତି । ଶିକାରରୁ ରକ୍ତମୁହାଁ ଫେରିଲି । ଖୋଜରେ କରଞ୍ଜ ଜଳୁଥାଏ । ଦିନେ ଘୁଷୁରିଆ ହାବୁଡ଼େ ପଡ଼ିଥିଲା । ତାକୁ ଦେଖିବା ମାତ୍ରେ ମୋ ତଳିପା ରକ୍ତ ତାଳୁକୁ ଚମକି ଗଲା । ପଚାରିଦେଲି— କିରେ ଘୁଷୁରିଆ, ତୁ କାହିଁକି ମୋ ଇଜ୍ଜତ ମହତକୁ ଢକଡ଼ାର କରି ଥୋଉଚୁ ? ମୋ ଝିଅଠି ଯଦି ତୋର ମନ, ତୁ ତାକୁ ବେଦେ ହୋଇ ପଡ଼ୁନୁ !

ଘୁଷୁରିଆ ଘୁଷୁରି ଥୋମଣିକି ଲମ୍ବାଇ କହିଲା— ତୋ ଝିଅଠି ମୋର ମନ, ଏ କଥା ସତ । ଏମିତି କେତେ ଝିଅଙ୍କଠି ତ ମୋର ମନ । ଖୁଷି ଦେଖିବ । ଯୋଉଟା ମତେ ସବୁଠୁ ବେଶୀ ସୁଆଦିଆ ଲାଗିବ, ତାକୁ ବଛା ହେବ । ତାହା ନ ହେଲେ ମୋ ଘରେ ମାଇପୀ ଗୁହାଳଟେ ହୋଇଯିବ !

'କଣ କହିଲୁରେ ହାରାମ୍‌ଜାଦା, ମୋ ଝିଅ ତୋର ରକ୍ଷିତା ? ତୋ ପରି ଛୁଞ୍ଚୁକରଟା ଲାଗି ଏ ଖଣ୍ଡମଣ୍ଡଳ ହବ ବେଶ୍ୟାପଡ଼ା ?'

ତାପରେ ଯେତେବେଳେ ବନ୍ଧୁକ ଫୁଟିଲା, ଘୁଷୁରିଆ ମାଟି କାମୁଡ଼ି ପଡ଼ିଲା, ମୋର ଚେତା ନାହିଁ, ମୁଁ କିଛି ଜାଣେନାହିଁ ।

ଯେତେବେଳେ ଚେତା ଫେରିଲା, ଦେଖିଲି, ମୁଁ ହାଜତରେ ।

ଘୁଷୁରିଆ ବେଶୀ କାଳ ବଞ୍ଚିଥିଲେ ସଂସାର ନାଶ କରିଥାନ୍ତା । ଝିଅ ବୋହୂଙ୍କ ଇଜ୍ଜତ ମହତ ରଖି ନ ଥାନ୍ତା ।

ଏଇ ହିଂସ୍ର ଜନ୍ତୁମାନେ ସମାଜରେ ବହୁ ବିଭ୍ରାଟ ଘଟାଉଛନ୍ତି । ତାକୁ ମାରି ମୁଁ ସଂସାରର ଉପକାର କରିଚି ନା ନାହିଁ ? ସେଥିଲାଗି ମୋତେ ପୁରସ୍କାର ମିଳିବା କଥା । କାହିଁକି ମିଳିଲା ଶାସ୍ତି ?



## ଧର୍ଷଣ

ବିଘ୍ନରାଜଙ୍କ ଅର୍ଚ୍ଚନା ।

ମୋ ଉଦ୍ୟାନର ଧର୍ଷଣରେ ଅନୁଭବ କଲି—ମୁଁ ନିଜେ ହିଁ ଧର୍ଷିତ ହୋଇଛି ।

ଅଭିଯୋଗ କଲି ବିଗ୍ରହପତିଙ୍କ ଆଗରେ—ରାୟ ମିଳିଲା—ପ୍ରମାଣ ନାହିଁ ।

ସତରେ ସାକ୍ଷୀ ଛଡ଼ା ନିଜର ମୁଁ ଧର୍ଷିତ ହେଲି କାହିଁକି ? ନିଜକୁ ଭର୍ତ୍ସନା କଲି ।

ମୋ ବହୁରଙ୍ଗୀ ପ୍ରଜାପତିମାନଙ୍କୁ ମୁଁ ଜଗାଇ ପାରିବି ନାହିଁ ଆପଣା ରୁଚିରେ ? କି ଅପରାଧରୁ ତା ହେଲେ ମୁଁ ନିର୍ଯାତିତ ? ମୋ ସୌନ୍ଦର୍ଯ୍ୟ ବିପର୍ଯ୍ୟସ୍ତ ? ମୋ ଆଦର୍ଶ ଭୂଲୁଣ୍ଠିତ ?

ପୁଣି ଥରେ ଧର୍ଷିତ ହେବା ଦୁର୍ଯୋଗରୁ ନିଜକୁ ରକ୍ଷା କରିବା ଲାଗି ମୋର ଯାହା କିଛି ଶ୍ରୀ ସାଧନା ସବୁ ନିବେଦନ କଲି ଚିରସୁନ୍ଦରଙ୍କ ଚରଣ ତଳେ ।



## ଲାଲ୍ ଗାର

ଦୁଇଟି ରାଜନୀତିକଦଳ; ଉଭୟଙ୍କର ଲକ୍ଷ୍ୟ—ଲୋକ କଲ୍ୟାଣ । ତୀବ୍ର ପ୍ରତିଯୋଗିତା ଦେଖିଲି ।

ଲୋକଟିର ଗୋଡ଼ରେ ବାଜିଚି ଛୁରି । ଗୋଟିଏ ରାଜନୀତିକ ଦଳ ଡାକ୍ତରଖାନାରେ ପହଞ୍ଚି ଡାକ୍ତରଙ୍କୁ ଅନୁରୋଧ କଲା—ଶୀଘ୍ର ଚିକିତ୍ସା କର ।

ଡାକ୍ତର ବ୍ୟାଣ୍ଡେଜ୍ ବାନ୍ଧିବା ବେଳେ ଆଉ ଦଳଟି ପହଞ୍ଚିଯାଇ ଗର୍ଜନ କଲା—ଚିକିତ୍ସା ବନ୍ଦ କର । ତାକୁ ଛୁଇଁଲେ ତୁମ ବେକ କାଟିଦେବୁ ।

ତାପରେ ଦୁ ଦଳର ପିଟାପିଟି । ମୁମୂର୍ଷୁର ରକ୍ତଧାର ଝରି ସେତେବେଳେ ଲାଲ୍ ଗାରରେ କାଟିକାଟି ଗଲା, ଯାହା କିଛି ଲୋକକଲ୍ୟାଣ ହୋଇଥିଲା ।



## ରଖ, ନଇଲେ ମାରି ଦିଅ

ଆଜି ଧୋବେଇ ଖଲାସ୍ ହେଲା, ସଅଁତିରିଶ ବର୍ଷ ଜେଲ୍‌ଦଣ୍ଡ ଭୋଗିଲା ପରେ । ତାକୁ ହସ ମାଡ଼ୁଛି ନା କାନ୍ଦ ? ସେ ବୁଝି ପାରୁନାହିଁ ।

ତା ବିରୁଦ୍ଧରେ ହତ୍ୟା ଅଭିଯୋଗ; ପ୍ରକୃତ ହତ୍ୟାକାରୀକୁ ନ ପାଇ ଏଇ ନିରୀହକୁ ଧରି ଆଣି ପୁଲିସ୍ ହାଜତରେ ଭର୍ତ୍ତି କରିଥିଲା, ଯେମିତି ତୁରନ୍ତ କର୍ମ-ତତ୍ପରତାର ଚମକ ଖେଳାଇ ଅନେକ ବେଳେ କରେ ।

ବିନା ବିଚାରରେ ସେ ଜେଲ୍ ଭୋଗିଲା । ପୂର୍ବଜନ୍ମର କର୍ମଫଳ ବୋଲି ଭାବିବା ଛଡ଼ା ଏ ଶାସ୍ତି ଭୋଗର ସେ ଅନ୍ୟ କାରଣ ଦେଖିପାରୁ ନ ଥିଲା । ଜୀବନରେ ଏମିତି ବହୁତ କ୍ଷେତ୍ରରେ ଦେଖାଯାଏ—ପାଳିଙ୍କି ଉପରେ ପାଟଛତା, ବେଙ୍ଗ ଉପରେ ବା କୋରଡ଼ା । ଦୈବ ଦୋହପାଞ୍ଚ, ଦେର ଅଭିଯୋଗ ହୁଏ ।

ତାର ଦୁର୍ଭୋଗ ଶେଷ ହୋଇ ନ ଥାନ୍ତା, ଜଣେ ପର ଦୁଃଖ ବୁଝିପାରୁଥିବା ସାମ୍ବାଦିକ କର୍ତ୍ତାଙ୍କ କୁମ୍ଭକର୍ଣ୍ଣ ନିଦ୍ରା ଭଙ୍ଗି ନ ଥିଲେ ।

ଏ ମଧ୍ୟରେ ପୃଥିବୀ ଓଲଟପାଲଟ ହୋଇଯାଇଛି । ଯୋଦ୍ଧମାନେ ତମ୍ବା-ମୁଣ୍ଡ ବାନ୍ଧି ଆସିଛନ୍ତି ଭବ ବହୁତ ଜମଉଥିଲେ, ପାପପୁଣ୍ୟ ପ୍ରତି ଆଖି ବୁଜିଦେଇ, ସେମାନେ ଅକାଳେ ନିଃଶ୍ୱାସ ଛାଡ଼ିଛନ୍ତି । ଭଟ୍ଟା ଉପରେ ଜୁଆର ଧାଇଁଛି । ଖାଲ ହୋଇଛି ଢିପ, ବଙ୍କା ସିଧା । ବହୁତ କିଛି ଅଦେଖା, ଅଜଣା । ଧୋବେଇକୁ ପୃଥିବୀ ଜାଲଜାଲୁଆ ଦିଶିଲା । କଣ ଭଲ, କଣ ମନ୍ଦ ବୁଝିବା ଶକ୍ତି ହରେଇଥିଲା ।

ଘରଣୀର ଦଖଲ ଛାଡ଼ିଚି ତିନି ପୁରୁଷ ହେଲା । ଖୋଜି ଖୋଜି ତାକୁ ଠାବ କଲେ ବି ସେ କଣ ଆଉ ତାର ହେବ ? ଘରର ନିଅଂଶୀ ଡିହରେ ଭାଇସ୍ତା ବାଇଗଣ ଲଗେଇଛନ୍ତି । ଧୋବେଇକୁ ଦୋ ଦୋ ଚିହ୍ନା ହେବା ଲୋକ ଗାଁରେ ଜଣେ ବି ଦେଖୁନାହିଁ । କୁକୁର ତଡ଼ିବାରୁ ଧୋବେଇ ପଳେଇ ଆସିଲା, ସରକାରଙ୍କୁ ଦରଖାସ୍ତ କଲା—ମଣିମା, ଜେଲ୍ ମୋର ଘର; ସେଠି ମୋର ଯେତେ ଚିହ୍ନାଜଣା, ବାହାରେ ଜଣେ ହେଲେ ନାହିଁ । ମୋତେ ସେଠି ରଖ, ନଇଲେ ମାରିଦିଅ ।



## କେତେ ସୁଧାର ଦଶେ; କି ବିଷମ !

ଯାତ୍ରାରେ ପୁଲସ୍ ବାହାରିଚି; ବାପ ମଞ୍ଚ ଉପରକୁ ଉଠିଯାଇ ଚିତ୍କାର କଲା—ରକ୍ଷା କର, ମୋ ପୁଅକୁ ରକ୍ଷା କର !

ଶ୍ରୋତା ତୋଫାନୀ ସ୍ୱରରେ ହସି ଉଠିଲେ—ମିଛ ପୁଲିସ୍, ଏ କଣ ରକ୍ଷା କରିପାରେ ? ପାଗଳ !

ଯାତ୍ରାଟା ଭଣ୍ଡୁର୍ କରିଦେଲା ।

ଦଳେ ତାକୁ ଶୂନ୍ୟେ ଶୂନ୍ୟେ ଟେକିନେଇ ଦୂରରେ କଚି ଦେଲେ ।

ସେଥିକିଦେଲେ ଯାତ୍ରାର ଆଡ଼ୁଆଲରେ ଚାଲିଥିଲା ମହାଯାତ୍ରାର ଏକ ଜଘନ୍ୟ ଲୀଳା । କରୁଣ ଚିତ୍କାର ଲୁଚି ଯାଉଥିଲା ଯାତ୍ରାର ମଙ୍ଗଳଗୀତ, ଢୋଲକ, ବିଗୁଲ୍ ଆଉ କ୍ଲାରିଓନେଟ୍‌ର ମୂର୍ଚ୍ଛନା ମଧ୍ୟରେ ।

ସେଇ ବୁଢ଼ାର ପୁଅକୁ ମାରି ପକାଉଥିଲେ ଚାରିଟା ଷଣ୍ଢ଼ା ଜୁଆନ୍, ହଠାତ୍ ହାବୁଡ଼େ ପଡ଼ିଲା ବୋଲି କି ପୁରୁଣା ପ୍ରତିଶୋଧରେ ।

ପୁଲିସ୍ ଜାଣିଲା—ଅପରାଧୀମାନେ ନାମ୍‌ଜାଦା, ମହାଦେବଙ୍କ ବୃଷଭ, ଶାସନ ବାହାରେ ଉଦା ଖାଇ ବୁଲନ୍ତି ।

ବାହାରେ ଧର୍ମ ଯୁଧିଷ୍ଠିରଙ୍କ ଶାସନ ଚାଲେ, ଭିତରେ ଦୁଃଶାସନର ରାଜୁତି ।

କେତେ ସୁଧାର ଦଶେ, କି ବିଷମ ଏ ସଂସାର !



## ଶସ୍ତାରୁ ତିନି ଅବସ୍ଥା

ଷ୍ଟିଲ୍ ବାସନ, ସ୍କୁଟର, ରେଡ଼ିଓ, ଟେଲିଭିଜନ୍—ଆଉ କଣ ?

କେତେ କଣ ? ତାଲିକା ଗୋଟେ ମାଳିକା—ଭବିଷ୍ୟତ କହେ—ପ୍ରାପ୍ତିଯୋଗ ।

ଏକ ତୃତୀୟାଂଶ ଦାମ୍ ଦେଲେ ଚାରିମାସ ପରେ ଏସବୁ ଜିନିଷ ମିଳିବ ।

ମହାଜନ ମୃଦୁ ହସେ, ଦୁର୍ଜନ ପରି ତ ଦଶେ ନାହିଁ—ନଅ, ନଅ ଆଖି ବୁଜି ।

ସତକୁ ସତ ଜିନିଷ ବି ମିଳିଗଲା—ପ୍ରଥମ କିସ୍ତି, ଦ୍ୱିତୀୟ କିସ୍ତି ବି । କି ଶସ୍ତା ! କେତେ ଭାଗ୍ୟ ! ତୃତୀୟ କିସ୍ତିକି ଜମିଲା ଭିଡ଼ ।

ଦୁର୍ଗାପୂଜା ବେଳ; ଘୂର୍ଣ୍ଣୀ—ବର୍ଷା । ତା ଭିତରେ ମହାଜନ ପାର୍, ହପ୍ତାଟିଏ ବାଙ୍କ, ଲୋକେ ରଙ୍ଗୀନ୍ ସ୍ୱପ୍ନ ଦେଖୁଥିଲେ ବେଳେ । ମହାଜନ୍ ପାର୍, ପକେଟରେ କୋଡ଼ିଏ ଲକ୍ଷ ଟଙ୍କା । ଝଡ଼ ତାର ଅଟ୍ଟହାସ୍ୟ ହିଁ ବଖାଣୁ ଥିଲା । ସହରବାସୀ ସବେ—କିଛି ଜିନଷ ଲଗି ଯାଇଛୁ, ଆସିବ ନଷ୍ଟେ । କିନ୍ତୁ କାହିଁ ? ଆହା କାହିଁ ? କିଏ ଜାଣେ କାହିଁ ? ଯିଏ ଥିଲେ କଣ ହେବ, ଯାହା ନ ଥିଲେ ଯେ ବୁଝିପାରେ ନାହିଁ ସେ 'ଶନ୍ତ୍ରାର ଭଜ ଅବସ୍ଥା' !

●

# ଫାଶି

ସୌଦାମିନୀ ଜଳିଲା ।

କାହିଁ

ବାପ ମା ଶ୍ୱଶୁରଙ୍କୁ ଯୌତୁକ ନ ଦେବାର ଶାସ୍ତି । ଯୌତୁକ ତ ବେଶୀ କିଛି ନୁହେଁ—ମାରୁତି ଗାଡ଼ି, ରଙ୍ଗୀନ୍ ଟେଲିଭିଜନ୍, ଫ୍ରିଜ୍; ଦାନକୁ ଦକ୍ଷିଣା ମାତ୍ର ଲକ୍ଷେ ! ଆଇ. ଏ. ଏସ୍. ପାତ୍ରକୁ ଏତିକି ଦାବୀ କଣ ଏମିତି ବଡ଼ କଥା ? ନ ଦେଇ ପାରିବ ତ ଭଲଘର ବା ବର ଖୋଜିବ କାହିଁକି ? ସେହି ଚୋର୍ ଜବାବ୍ ଦେବ କାହିଁକି ?

ସୌଦାମିନୀର ହାତଗୋଡ଼ ବନ୍ଧା; ଶାଶୁ କିରୋସିନ ଢାଳିଲେ, ସ୍ୱାମୀ ଦିଆସିଲି ମାରିଲା । ସୌଦାମିନୀ ଜଳିଲା ହୁରୁ ହୁରୁ ହୋଇ, ପେଟରେ ପିଲା ।

ସ୍ୱାମୀ ଆହୁରି କିରୋସିନ ଢାଳିଲା—ତୁରନ୍ତ ଏ ଜନକ ସ୍ତ୍ରିଣମାଟିକି ପାଉଁଶ ମୂଠାଏ କରି ଫୁତ୍କାରରେ ଉଡ଼େଇ ଦେବା ପାଇଁ, ଶାଶୁ ବାଜା ବଜେଇଲା, ବିଳାପ ଚିତ୍କାରକୁ ଡୁବେଇ ଦେବା ପାଇଁ ।

ଧନତନ୍ତ୍ରର କଳୁଷିତ ପୃଥିବୀରେ ଏବେ ବି କେତୋଟି ବିଚାରଶୀଳ ମନ ଅଛି । ନଇଲେ ତ କଚେରୀର ବିଚାର ଟଙ୍କାରେ ବନ୍ଧା ହୋଇଯାନ୍ତା । ନ୍ୟାୟକୁ ବାଟ ମିଳନ୍ତା କାହିଁ ?

ଫାଶି ହୁକୁମ୍ ହେଲା ଧନ କାଙ୍ଗାଳୀ ମା ଅଙ୍କୁ, ଧନ ପାଗଳ ପୁଅକୁ ।

ସୌଦାମିନୀ ନ.ଚ ଛୁ ସ୍ୱରର ବାଦଲରେ, ଝଡ଼ର ଏକ ଘନ ତମିରରେ ବେସୁରା ଅଟେନକ ହସ ଶୁଣୁଚି ଏପରି ବନ୍ଧୁ ବେତାଳିଆ ସଂସାର ।

●

# ଖୋରାକ ପୋଷାକ

କେହି ବୁଝିନ ଥିଲେ; ସେ ଆସିଲା ସାତୋଟି ପରେ । ବାପ ଗଲି କାହିଁ; ସେ ସାତୋଟି ସମ୍ଭାଳୁଛି, ଅଭ ଗୋଟିକରେ ମାଆର କେତେ ବା ଅସୁବିଧା ? କେତେବେଳେ ଫଳ କି ବୃକ୍ଷକୁ ହୁଏ ଭାର ?

ଈଶ୍ୱର କୁଆଡ଼େ ପ୍ରତି ଜନ୍ମିତ ପ୍ରାଣୀ ଲାଗି ଦାନା ଖଞ୍ଜି ରଖନ୍ତି ।

କିନ୍ତୁ ତା ପାଇଁ କୋଉଠି କଣ କାହିଁ ? ମାଆର ଥନରେ କ୍ଷୀର ନାହିଁ; ବୋପାର ଗଣ୍ଠିରେ ଧନ ନାହିଁ ।

ଅପରେସନ୍ ପୁରାପୁରି ଫେଲ୍ ମାଇଲା । ଏଥିଲାଗି ଡାକ୍ତର ଦାୟୀ, ଦାୟୀ ଏ ଅପଦାର୍ଥଙ୍କୁ ନିଯୁକ୍ତ କରିଥିବା ସରକାର ।

ବାପ ସରକାରଙ୍କ ପାଖେ ଖୋରାକ୍ ପୋଷାକ୍ ଦାବୀ କଲା, ଏକୋଇଶି ବର୍ଷର, ଏ ପିଲାର ମୁଣ୍ଡକୁ ହାତ ପାଇବା ପର୍ଯ୍ୟନ୍ତ; ଦୀର୍ଘ ଦୁଃଖଯନ୍ତ୍ରଣା ଲାଗି ଉପଯୁକ୍ତ କ୍ଷତିପୂରଣ ଦେବାକୁ ମଧ୍ୟ ତା ସହିତ ଦାବୀ ହୋଇଥିଲା ।

ହେଲେ ମାମଲାରେ ତ ମାଆ ମରେ, ଘରେ ମକଦ୍ଦମା ପଶୁ ବୋଲି ଶାସ୍ତ୍ରକୁ ଅଭିଶାପ ଦିଆଯାଏ । ଏ ମାମଲା ଫଇସଲା ହେବାଯାକେ କଣ ସେ ପିଲା ବଞ୍ଚିଥିବ ?



# ଦି ମାଷ୍ଟରାଣୀ

କଣୋଶ, ଈଶ୍ୱରୀ ଦି ମାଷ୍ଟ୍ରାଣୀ; କଣୋଶ ବିବାହିତା; ବର୍ଷ ବାଛୁ ବାଛୁ ଈଶ୍ୱରୀର ଯୌବନ ଖସିଗଲା ।

ଦିନେ ଦି ମାଷ୍ଟ୍ରାଣୀ ସୁଖଦୁଃଖ ହେଉଁ ହେଉଁ କଣୋଶ କହିଲା—ତୁମର ଭଲ, ନିଶ୍ଚିନ୍ତ ଜୀବନ; ସଂସାର କଳମାନେ ଘରଚିନ୍ତା ମାଡ଼ିପଡ଼େ । ସ୍ୱାମୀ ଲାଗି ଚିନ୍ତା, ପିଲାପିଲିଙ୍କ ଲାଗି ଭାବନା, ନାନା ଦୁଃଖ, ନାନା ଅଶାନ୍ତି । ସଂସାରଣୀର ମନ ସଦା ଅସ୍ଥିର ।

ଈଶ୍ୱରୀ କହିଲା—ଭଲ ? ଆମର କଣ ଭଲ ? ସଂସାର କଲେ ଦୁଃଖ ଯେତିକି, ସୁଖ ବି ସେତିକି; ସ୍ୱାମୀ ସୁଖ, ସନ୍ତାନ ସୁଖ ଭୋଗ କରି ନ ପାରି କୁମାରୀ ପଣ୍ଡାଇ

ହୁଏ । ବେଳେ ବେଳେ ଲାଗେ—ଭଲ ନୁହେଁ ତ କଣ ? ଯାହା ଇଚ୍ଛା ଖାଇଲୁ, ଯୁଆଡ଼େ ଇଚ୍ଛା ମୋହିଁଲୁ । କେହି ଆକଟିବାକୁ ନାହିଁ । ସ୍ୱାଧୀନ ଜୀବନ; ପ୍ରାଣୀ ପରି ଆମେ ରହୁ ।

କିନ୍ତୁ ମଲାବେଳେ ତୁମେ ପ୍ରାଣୀପରି ମର, ତୁମ ଇଲାକାରେ ହାହାକାର ପଡ଼ିଯାଏ । ଅହ୍ୟାୟ୍ରଣୀ ହୋଇଗଲେ ତ ଧନ୍ୟ ଧନ୍ୟ ପଦ; ଶବ ଶୋଭାଯାତ୍ରା ବେଳର ଗୁଭଖାଇ, କଉଡ଼ି ଲୋକେ ସାଇତି ରଖନ୍ତି ।

ଆମେ ? ଆମେ ରାସ୍ତାର କୁତା ପରି ମରୁ । ଆଖିରୁ ଟୋପାଏ ଲୁହ ଗଡ଼େଇବାକୁ ପାଖରେ ଜଣେ ହେଲେ କେହି ନଥାନ୍ତି ।



## ଧଚେଇ ଓକୀଲଙ୍କୁ କହ୍ନେଇ ଚାକର

ଓକିଲାତି ଗୋଟେ ଆଲ । ତାକୁଙ୍କ ସୁନାରୁପା ରଖନ୍ତି, ଧରାପଡ଼ିଲେ ଖଲାସ୍ କରିବା ଲାଗି ଲଢ଼ନ୍ତି ।

ବଡ଼ ଓକିଲ ବୋଲି ନାଁ—ଡାକ, କିନ୍ତୁ ଓକିଲାତି କରନ୍ତି କୂଟଚାଲ; ମାମଲତକାର, ଟାଉଟର ବୋଲି କେତେ ବଦ୍‌ନାମ୍ କରନ୍ତି । କିନ୍ତୁ ବୃଥା; ତାଙ୍କ ଅଗ ଗୋଡ଼ରେ କଣ୍ଟା ବାଜେନାହିଁ । ମହକିଲର ଅସଲ ଲକ୍ଷ୍ୟ ହାସଲରେ ସୁଦକ୍ଷ ସେ; ଫଳରେ ତାଙ୍କ ଉପରେ ଅର୍ଥ ବୃଷ୍ଟି ହୁଏ ।

କିନ୍ତୁ ଯେତେ ଅର୍ଥଲାଭ, ସେତେ ଲୋଭ ବଢେ । ସ୍ତ୍ରୀ ପୁରୁଷଙ୍କ ମଧ୍ୟରେ କିଏ ଅଧିକ କୃପଣ ଠିକଣା କରି ନ ପାରି ଲୋକେ ଛଟା ମେଲିଥାନ୍ତି—

କଣାକୁ କାଣୀ

ଭଲ ଭିଆଇଛୁ ଚକରପାଣି ।

ଚାକର କହ୍ନେଇ ଆଠଦିନ ଛୁଟି ନେଇ ଗାଁକୁ ଗଲା । ରହୁ ରହୁ ପନ୍ଦର ଦିନ ରହିଗଲା । ତାପରେ ଓକିଲ ନୋଟିସ୍—"ଚନାବାଦାମ୍ କିଣି ଆଣିଦେବୁ ବୋଲି ପାଞ୍ଚଣ ଟଙ୍କା ନେଇ ଯାଇଛୁ । ଏ ନୋଟିସ୍ ପାଇ ବସିଲାଠୁ ଉଠି ଆସିବୁ, ନଇଲେ ଓ୍ୱାରେଣ୍ଟ୍ ବଳରେ ଧରାହୋଇ କଚେରୀରେ ହାଜର ହେବାକୁ ବାଧ୍ୟ ହେବୁ ।"

ତାପରେ କହ୍ନେଇର ବାପା ସନେଇ ଓଲଟା ନୋଟିସ୍ ଦେଲା—"ସାତୋଟି ପିଲାରୁ ମୋର ପାଞ୍ଚୋଟି ଝିଅ; ତିନି ଓଳିରେ ଓଳିଏ ଚୁଲି ଜଳେ ।

ମୁଁ କି ମୋ ଘର ପୁରୁଷରେ କେହି ଶହେଟଙ୍କିଆ ନୋଟ୍ ଦେଖିନାହାନ୍ତି । ଭଗବାନ ମୋତେ ଟଙ୍କାବାଡାମ୍ ହୁଏନାହିଁ । ମୋ ପୁଅ ଏଭଳି ମାଟି କାମୁଡ଼ି ମରିବ ପଛେ ତମ ପାଖକୁ ଆଉ ଖ୍ରିକେଟ ଭିକ ମାଗିବନାହିଁ । ବେଶୀ ଜୁଲମ୍ କଲେ ବଅଁଶଯାକ ତମ ଦୁଆରେ ଧାରଣା ଦେଇ ମରିବୁ ।”



## ହରିଜନ

ହରିଜନଙ୍କୁ ଧର୍ମପୁଅ କରି ଦେଇଥିଲି, ଯମ ଛୁଇଁବ ନାହିଁ ବୋଲି, ଯେହେତୁ ବଡ଼ପୁଅ ଅକାଳେ ମରିଥିଲା ।

ଘରପୁଅ ଘରେ ରହିଲା, ସେହି ଆଳରେ ହରିଜନ କୋଟାରେ ସେ ସହଜରେ ଆଇ. ଏ. ଏସ୍. ହେଲା । ସେତେବେଳକୁ ବିବାହିତ, କ୍ଷତ୍ରିୟ ପରିବାରରେ ଜେଜେ ପାଲଟାସିଂହଙ୍କ ଲାବଣ୍ୟବତୀ କନ୍ୟା ସହିତ ।

ସ୍ୱାମୀର ଆଇ. ଏ. ଏସ୍. ପାହ୍ୟାରେ ଫୁଲ ଉଠାଗଲା ଜଣେ, ସେ ହିତଷଣିଙ୍କ ଘୃଣା ଗ୍ରାଲିଗଲା, ଏତକି କହି—ମୁଁ ବାହା ହୋଇଥିଲି ଜଣେ କ୍ଷତ୍ରିୟକୁ, ହରିଜନକୁ ନୁହେଁ ।

ବୁଝିପାରିନା ଏତକି ବୁଝିବାକୁ ନାହିଁ ଯେ ପୃଥିବୀର ସମସ୍ତ ଜନ ହରିଜନ ।



## ଦର୍ପଣ

ହୋଟେଲର ଅଇଁଠା ଖାଇ ଫିଙ୍ଗିଦେଲା ପରେ ବେଢ଼ିଗଲେ କେତୋଟି ଲଙ୍ଗଳା ପିଲା, କେତୁଟା କୋମଳପୁଡ଼ା କୁକୁର, ଦୂରେଇ ବସିଲେ କେତୁଟା ଡାମରା କୁଆ ଅବଶେଷ ଖୁଣ୍ଟିବାକୁ । ଘର ଦର୍ପରେ ମାଛି ଆସୁଥିଲେ କୁଇଟା ଭୁଲି ଖଣ୍ଡ ଯଥାଶୀଘ୍ର ଗିଳି ଦେବାକୁ ।

ଆଉ ଟିକିଏ ଦୂରରେ ଦେଖିଲି, ଗୋଟାଏ ଲମ୍ବା ଧାଡ଼ି, ବାଡ଼ିଧର ଖୋଟେଇ ଚାଲିଛନ୍ତି କୋଢ଼ି, କେତେ ବା ବସିଛନ୍ତି ମଣିଷଠେଲା ଗାଡ଼ିରେ—ଯୁବତୀସବୁ, କୋଳରେ ପିଲା, ଭିକାରୀ ସମାଜର ନୂଆ ପରିବାରର ମୂର୍ତ୍ତିସବୁ । ସେତେ ବୁଢ଼ା, ଛୁଡ଼ା, ଅନ୍ଧ, କଣା, ବାଇଗରଙ୍କ ସହିତ ଗ୍ଲାନିଛନ୍ତି କେତୁଟା ପଟା

ଅଳସୁଆ, ଏଇ ସହଜ ଉପାୟରେ ଶ୍ରମିକ ଅପେକ୍ଷା ଅଧିକ ରୋଜଗାର କରୁଛନ୍ତି ବୋଲି ମନରେ ଗର୍ବ ।

ଏଇ ଦର୍ପଣରେ ଦେଖିଲି ଦେଶର ମୂର୍ତ୍ତି, ସ୍ୱାଧୀନତାର ପଚିଶି ବର୍ଷ ପରେ ।

●

## ଭଗବାନ୍‌ଙ୍କ ଦାନ ଅପାତ୍ରରେ ?

ଏ ମୋର ଘର, ସବୁ ରୁମ୍‌ ମୋଜାଇକ୍‌ କରାଚ; ବମ୍ବେ ଆର୍ଟିଷ୍ଟ୍‌ ବିଦେଶୀ ଫେସନରେ ସଜାଇଛି । ଏ ଲନ୍‌, ଏ ଗାର୍ଡ଼ନ୍‌, ଦେଶୀ ବିଦେଶୀ ଫୁଲଭରା । ଏଇ କିଛି-ନ-ଥିଲାକୁ ଭଗବାନ୍‌ ଛପରଫାଡ଼ି ଦେଇଛନ୍ତି । ଧନ କେତୁଟାରେ ଧନଜନ ଗୋପଲକ୍ଷ୍ମୀ ବୋଲି ଯାହା କହନ୍ତି, ମୁଁ ସବୁ ପାଇଛି । ଭଗବାନ୍‌ଙ୍କର ଅସୀମ ଦୟା, ବଖାଣିଲେ ପୃଷ୍ଠିପଥ ମୋହ ।

ସତରେ ଶ୍ରୀ ମୋହଙ୍କୁ ଭଗବାନ୍‌ଙ୍କ ଦୟା ବିପୁଳ, ବିସ୍ମୃତ, ତାଙ୍କ ପ୍ରାଙ୍ଗଣରେ ଛିଡ଼ାହୋଇ ଚତୁର୍ଦ୍ଦିଗକୁ ଲକ୍ଷ୍ୟ କଲି । ପୃଥିବୀରେ ଏଇ ଦାନ ଯେଉଁ କେତେକ ଭାଗ୍ୟବନ୍ତ ପାଇଛନ୍ତି, ଅଧିକାଂଶ ତାକୁ ସାତଗଣ୍ଠି ପକାଇ ରଖିଛନ୍ତି, କୃପଣ, ନଇଲେ ଭୋଗର ପଙ୍କରେ ଆକଣ୍ଠ ନିମଗ୍ନ ।

ଦୟା ଯେ ଗୋଟାଏ ନଦୀ, ବୋହିଯିବା ତାର ଧର୍ମ—ସେ କଥା ଭୁଲି ଯାଇଛନ୍ତି ।

କହିଲି—ବନ୍ଧୁବର ମୋହ, କଥା ଅଛି—ଦେଇଥିଲେ ପାଇ, ସେହିପରି ପାଇଥିଲେ ମଧ୍ୟ ଦେଇ । ତାହେଲେ ଦେବା ଧନ ଭଗବାନ୍‌ଙ୍କ ଦୟା ରୂପରେ ଫେରିଆସେ । ଆପଣଙ୍କ ଜୀବନରେ ତାହା ହିଁ ଘଟିଛି । କେବେ ଦେଇଥିଲେ, ଏବେ ପାଇଛନ୍ତି ।

ସେ ଦୟା ଜମେଇ ରଖିବା ଲାଗି ନୁହେଁ । ହାତକୁ ହାତ ଯାଇ ସବାତଳ ପାହାଚରେ ପହଞ୍ଚିବା କଥା, ତା ନୋହିବା ଫଳରେ ଆଜି ଏତେ ଦାରିଦ୍ର୍ୟ, ଏତେ ଦୁର୍ଭିକ୍ଷ ଓ ଦୁଃଖ ।

ପୃଥିବୀରେ ଲକ୍ଷକେ ଜଣେ ମାତ୍ର ସେ ଦୟା ଲାଭ କରନ୍ତି । ଅଧିକାଂଶ ଦୀନ, ଦୁଃଖୀ । ସେମାନଙ୍କ ଭାର ଭଗବାନ ଆପଣଙ୍କ ହାତରେ ହିଁ ଦେଇଛନ୍ତି । ଆପଣ ସେମାନଙ୍କ କଥା ନ ବୁଝିଲେ ବୁଝିବ, ଭଗବାନ୍‌ଙ୍କ ଦୟା ଅପାତ୍ରରେ ହିଁ ହୋଇଛି । ଦେଶ କାଳ ପାତ୍ର ନ ଦେଖି ଦାନ ଦେଲେ ତାହା ଅକାର୍ଯ୍ୟରେ ଲାଗେ, ପାଣିଚ଼ରେ ପଡ଼େ ।

●

# ରାତକେ ହାତଏ ଅଣିବାର ଯୋଜା ବାଟ

ଭୁଇଁତଳ ଘରେ ଚୋଟି ଚପି ମାରଚ, ଗୋଟାଏ ଦୁଇଟା ନୁହେ, ହଜାରେ ପିଲା; କଂସ ବି ଗୋପପୁରେ ଏତେ ମାରି ନ ଥିବ ।

କାହାର ମୁଣ୍ଡ ଛେଚନାହିଁ, ଘୁଡରେ ବା ଦେକରେ ଛୁରୀ ମାରନାହିଁ । ହାତଗୋଡ଼ ଆଉ ମୁହଁ ବାନ୍ଧି ଚୋଟି ଚପି ଦେଇଚ । କେଁ ଶବ୍ଦଟିଏ ବି ହୁଏନାହିଁ ।

ଅକ୍ଷତ କଙ୍କାଳସବୁ ପାଶ୍ଚାତ୍ୟ ବଜ୍ଞାନାଗାର ଲଗି ଲୋଡ଼ା । ଏ ଜନବହୁଳ ଦେଶର କେତୋଟି କଶୋର କଶୋରୀ ଲୋପ ପାଇଗଲେ କ୍ଷତି କଣ ? ଶିଶୁରୋଗ ଅଧ୍ୟୟନ ଲଗି ଶହୀଦ୍ ହେବା ଗୌରବର କଥା !

ମୁଁ ପାଇଲି ପ୍ରତି କଙ୍କାଳ ଲଗି ପାଞ୍ଚହଜାର ଡଲାର୍; ଧନ ଅର୍ଜନବେଳେ ତଳକୁ ଉପରକୁ ଗୃହିଁଲେ, ପାପପୁଣ୍ୟ ବିଗୃର କଲେ କଣ ଚଳେ ?

ଆଖି ବୁଜିଦେଲେ ହିଁ ବ୍ୟବସାୟ ମାଡ଼ିଚ୍ଳେ—ଔଷଧରେ ଉପଶମ ହେଲା କି ରୋଗ ବଢ଼ିଲା, ଖାଦ୍ୟ ଶକ୍ତି ଦେଲା, କି ହତ୍ୟା କଲା, କଏ ଦେଖେ ? ରାତାରାତ୍ ବଡ଼ଲୋକ ହେବାଲଗି ଏହାଠାରୁ ସହଜତର ଉପାୟ ଆଉ କଣ ଅଛି ?

ଧନ ହିଁ ଇଜ୍ଜତ, ଧନ ହିଁ ଗୁରୁତ୍ୱ ଗୌରବ; ଏ ଯୁଗରେ ଧନଥିଲେ ଲୋକ ଅସାଧ୍ୟ ସାଧନ କରିପାରେ । ସ୍ୱର୍ଗକୁ ସିଡ଼ିଟାଏ ଲମ୍ବାଇବା ତା ପକ୍ଷରେ ଅସମ୍ଭବ ନୁହେଁ । ଅକାଳେ ନ ମରିଥିଲେ ରାବଣେଶ୍ୱର କରି ପାରିଥାନ୍ତା, ଲୋକେ ସେଥିରେ ଚଢ଼ି ସିଧା ସ୍ୱର୍ଗକୁ ଚ୍ଳି ଯାଇଥାନ୍ତେ !

ଯେତକ ଗୃହିଁଥିଲି, ତା ଅପେକ୍ଷା ଢେର୍ ବେଶୀ ପାଇଲି ।

କିନ୍ତୁ······

ଭୁଇଁତଳୁ ହନେ ଉଠି ଦେଖେ ତ ମୋ ଘର ଖାଲି । ମୋ ସ୍ତ୍ରୀ, ପିଲାସବୁ ଗଲେ କୁଆଡ଼େ ? କହିପାରିବ ?

ଭୂତମୁଣ୍ଡ, ମୁହଁରେ ଚଙ୍ଗଳ, ଯାହାକୁ ଦେଖୁଚ, ପଚ୍ଚରୁଚ— କହିପାରିବ— ମୋ ପିଲାଏ ଗଲେ କୁଆଡ଼େ ?

(ତୁ ଯେମିତି ଟ୍ରେଡ୍‌ପୁଟ୍‌କୁ ଦଠାଇଚୁ, ଯେମିତି ଆଉ କଏ·······। କହିବ ? ନା-ନା)

ମୋ ଉଁଝକୁ ଅତେହା ନଦର ଚୋଟାଏ ଭଦ୍ଦଜତ ଦ୍ଧୋଚ ଦର ଯେ ଦନାଇଳ; ସତେ ଯେମିତି ଅନେକ ଭୂତ ତାକୁ ଗୋଡ଼ାଇଛନ୍ତି ! ●

# ମୋ ଶଙ୍କା କଣ ମୋତେ ଶେଷ କରିଦେବ ?

ଶଙ୍କା ଖାଇଲାବେଳେ—କାଳେ କିଏ ବିଷ ମିଶାଇ ଦେଇଥିବ !

ଗାଡ଼ିରେ ଗଲାବେଳେ—କାଳେ ହଠାତ୍ ଆକ୍‌ସିଡେଣ୍ଟ୍ ହୋଇଯିବ ?

ଦେବଦର୍ଶନ କଲାବେଳେ—କାଳେ ଦେଉଳଟା ମୁଣ୍ଡ ଉପରେ ଅଜାଡ଼ି ହୋଇପଡ଼ିବ !

ବଗିଚାରେ ବୁଲିଲାବେଳେ—କାଳେ ସାପ ହାଣିଦେବ !

ହଠାତ୍ ଗୁଣ୍ଡା ଆକ୍ରମଣ କରିବ, ମୁଣ୍ଡରେ ଚଡ଼କ ପଡ଼ିବ, କିମ୍ବା ଅସାଧ୍ୟ କର୍କଟ କବଳରେ ପଡ଼ିଯିବ !

ଦୈବର ପ୍ରତିଶୋଧ ଆସିବ କିପରି, କେତେବେଳେ ?

ଗୋଟାଏ କୁହୁଡ଼ି ପରି ଶଙ୍କା ପୋଡ଼ି ଗ୍ରାସିଚି ଗୋଟିକ ଗୋଟି ମୋର ଆନନ୍ଦର ପଦ୍ମପାଖୁଡ଼ା ହଠାତ୍ ନିଜ ଛାଇକି ଦେଖି କାହିଁକି ମୁଁ ଡରି ଛାନିଆଁ ହୋଇଯାଏ ?

ନିଜ କଣ୍ଠସ୍ୱର ଶୁଣି କାହିଁକି ବା ଚମକିପଡ଼େ ? କୋକୁଆ ଭୟ ମୋର ଭିତରେ, ବାହାରେ, ସବୁଆଡ଼େ ।

ଏତେ ଦିନର ଦାନଧର୍ମ ଗୋଟାଏ ଦିନର ଅପକର୍ମକୁ ଧୋଇ ସଫା କରି ପାରୁନାହିଁ ?

ମୋ ଶଙ୍କା କଣ ମୋତେ ଶେଷ କରିଦେବ ?



# ଦୁର୍ଲଭ

‘କଣ୍, ଶଶୁର ସେବା କରିବାକୁ ଯାଇଥିଲୁ ?’

ମାଆ ଦୁଃଶୀଳା ଚିଠି ଲେଖିଲା ।

‘ସେ ରାଗିବେ । ଆଜିକାଲି ଚଡ଼୍ ଚଡ଼୍ ହୁଅନ୍ତି । ମୋ କଥା ତାଙ୍କୁ ବିଷ ପରି ଲାଗେ । କଣ୍ କରିବ ?’ ଝିଅ ଦୁର୍ଲଭା ଉତ୍ତର ଦେଲା ।

ଶ୍ୱଶୁର ଶଯ୍ୟାଶାୟୀ, ସ୍ୱାମୀ ଟୁର୍‌ରେ । ରାଗରେ ତମ୍ ତମ୍ ହୋଇ ଦୁଃଶୀଳା ମଟରରେ ଝିଅକୁ ଘେନି ଚାଲି ଆସିଲା ।

ଏ ମଧ୍ୟରେ ତିନି ବର୍ଷ ବୋଲିଗଲା; ସ୍ୱାମୀ ଅରୁଣ ଶ୍ୱଶୁର ଘର ଆଡ଼କୁ ଦୃକ୍‌ପାତ କଲନାହିଁ, ସ୍ତ୍ରୀର କୌଣସି ଖବର ବି ନେଲନାହିଁ ।

ଲୋକ କଥାକେ କଥାକେ ଚିଡ଼୍ ଚିଡ଼୍; ଖାଇ ସବୁ ଦେଖନ୍ତି, ପାଟି ଫିଟାନ୍ତି ନାହିଁ ।

ଦୁଲ୍ଲଭ ଲୁଚା ଟିଣ୍ଡିକ ବି ଯତ୍ନ କରେନାହିଁ; ନଭେଲ୍ ପଢ଼ିବ, ନଇଲେ ସିନେମା ଦେଖିବ; ମାଆ ଗୋଟିଏ ବଡ଼ କଥାରେ ଫୁଲୁଣା ଦେଲଣି ।

ଲୋକେ ଦେଖେଇ ଦେଖେଇ କହନ୍ତି—କାହା ସହିତ ଭାବ ଥିବ ନା, ନଇଲେ······

ଦୁଲ୍ଲଭ କାନରେ ହାତ ଦେଲ; ସ୍ୱାମୀ କଥା ତାର ମନେ ପଡ଼ିଲା; କଣ କରିବ ? ଦଉଡ଼ି ଦେଇ ମରିବ ନା, ଶେଷ ଅକଲ୍ ସଲମ୍ ଦେଇ ସ୍ୱାମୀର ଶରଣ ପଶିବ ?

ଲେଖିଲ—ପ୍ରିୟତମ,

'ତମ ପାଦ ତଳେ ଲକ୍ଷେ ଅପରାଧ କରିଚି । ଏବେ ମୋ ଲାଗି ଗୋଟିଏ ବାଟ ଖୋଲ, ତୁମ ପାଦ ତଳେ ଆଶ୍ରୟ ନେବି; ସେ ଆଶ୍ରା ନ ମିଳିଲେ ମରିବି । ଆଖି ଲୁହରେ ଏ କଥା ଲେଖୁଚି । ତୁମେ ଯାହା କରିବ ।'

ଅରୁଣ ତାର ଉତ୍ତରକେ ଲେଖିଲା—

'ପଥ ସୁମଣ ଅ.ସିବ । ଆଉ ମିଥିଲାକୁ ମନ ନ କରିବ ବୋଲି ଯଦି ନିର୍ଭର ଜବାବ୍ ଦବ, ତେବେ ତୁମର କିଛି ଦୋଷ ନ ଧରି କ୍ଷମା କଲି, ଜାଣିବ ।'

'ଏ ଚରିଦୋଷୀକୁ ସ୍ତ୍ରୀର ମର୍ଯ୍ୟାଦା ଦିଅ । ବଳେ ପଶିଲେ ଲୋକ ନାକରେ ଲୁଗା ଦେଇ ହସିବ । ସେ ଲଜ୍ଜା ମରିବୁ ବଳେ ।'

ତାପରେ ଅରୁଣ ଲେଖିଲା—'ଏ ମୋର ପୁନର୍ବିବାହ, ଏକ ମର୍ଯ୍ୟାଦାମୟୀ ସହିତ, ଯେ ସୋହାଗ ଦେବ, ନେବ, ପ୍ରକୃତ ପ୍ରାଣସଙ୍ଗିନୀ ପ୍ରିୟା, ଯେ ସବୁ ଅଳି-ଅର୍ଦ୍ଦଳି, ଜଞ୍ଜାଳ ଝିନ୍‌ଝଟ୍ ମୁଣ୍ଡେଇ ପାରିବ, କାରଣ ଦୁଃଖ ଭିତରେ ହିଁ ସଂସାର-ଣୀର ସବୁ କିଛି ସୁଖ ।

ପ୍ରସ୍ତୁତ ରହିବ, ମୋର ପ୍ରାଣର ଦୁଲ୍ଲଭ । ଯାଉଛି ।'

●

# ଡାକୁ ଓ ମଣିଷ

ରାତିର ଶାନ୍ତ ସ୍ୱାଭାବିକ ନିଃଶ୍ୱାସ ଶବ୍ଦକୁ ସ୍ଥୂଳ ରୂପ ଦେଉଛି ଝିଙ୍କାରୀ ।

ଏତିକିବେଳେ କବାଟ ଭାଙ୍ଗି ପଶିଲେ ଡାକୁଦଳ । ଘର ମାଲିକଙ୍କୁ ଛୁରୀ ଦେଖାଇ କାବୁ କଲେ । ଲୁଟି ନେଲେ ସୁନା ରୂପା ଆଦି ଯାହା କିଛି ମୂଲ୍ୟବାନ୍ ।

ପାଟି ଶୁଣି ପଡ଼ୋଶୀ, ଗ୍ରାମବାସୀ ଠେଙ୍ଗା ବାଡ଼ି ଧରି ମିଶି ଆସିଲେ । ହାତବୋମାଟାଏ ଫୁଟାଇ ପଳାଇ ଗଲାବେଳେ ଡାକୁଦଳ ମଝିରୁ ଧରା ପଡ଼ିଲା ଜଣେ । ତାକୁ ମାଡ଼ ବସିଲେ ଘରବାହାରରେ ମଜ୍‌ଭୁତ୍ ଜବାନ୍ ଦି ଜଣ ।

'ମୁଣ୍ଡଟାକୁ ଛେଚି ଦେବା ?'

'ଟାଙ୍ଗ ଦିଟା ଗ୍ରେଟା କାଟିଦେବା ?'

'ଆଖି ଦିଟା ଫୁଟାଇ ଦେବା ?'

'ଯମ ପରି ଯେ ନିଷ୍ଠୁର, ତା ପ୍ରତି ଯେତେ ନିଷ୍ଠୁର ଆଚରଣ କଲେ ବି କିଛି ଦୋଷ ନାହିଁ—ବିଜ୍ଞ କିଏ ଉଚ୍ଚାରିଲା ଗମ୍ଭୀର ଭାବରେ ।'

ତାପରେ ସ୍ୱର ଉଠିଲା—ଆଖି ଫୁଟାଅ
ଆଖି ଦିଟା ଫୁଟାଇ ଦିଅ ତାର ।

ଢୋଲା ଉପରକୁ ଲୁହା କଣ୍ଟା ଉଞ୍ଚାଇଲା ବେଳେ ଡାକୁ ବିକଳ ସ୍ୱରରେ କାକୁତି କଲା—ମୋ ଆଖି ଯୋଡ଼ିକ ନିଅ ନାହିଁ ।

'ଆଖି ଥିଲେ କେତେ ଘର ପୋଡ଼ିବି, କେତେ ମଣିଷ ମାରିବି । କେତେ ଇଜ୍ଜତ ହରିବି·····

ମୂଳୁଁ ମାଇଲେ ·····।'

'ମତେ ବରଂ ମାରିଦିଅ ।'

'ତୁ ତ କେତେ ମାରିଚୁ; ଇଚ୍ଛା କଲେ ନିଜକୁ ମାରି ପାରିବୁ ।

ଆଖି ଥାଇ ଯେ ଅନ୍ଧ ପରି ଆଚରଣ କରେ, ତାର ଆଖି କି ଦରକାର ? ଜାଇଁ ମଲାପରି ଲାଗୁଥିବ । ହତ୍ୟାଠାରୁ ଭୟଙ୍କରତର, ଯୁଗ ଯୁଗକୁ ଏ ଶାସ୍ତି ଏକ ଚେତାବନୀ ହେବ !'

'ମୁଁ ସିନା ଡାକୁ—ନିର୍ଦ୍ଦୟ, ନିଷ୍ଠୁର·····ତୁମେ ତ ମଣିଷ·····କରୁଣାର ସମୁଦ୍ର, ମୈତ୍ରୀ ଓ ମାଧୁର୍ଯ୍ୟର ଅବତାର·····'

ଯବାନ୍ ହାତରୁ ଲୁହା କଣ୍ଟାଟା ଖସିପଡ଼ିଲା ।

●

## ରଫୁ କରି ପାରିବ, ଚାଚା ?

ହନିଫ୍ ମିଆଁ, କାଶ୍ମୀର ମୁସଲମାନ୍, ରଫୁ ମାଷ୍ଟର; ସାଲ, ଏଣ୍ଡି, ପାଟ, ସିଲ୍କ ଶାଢ଼ୀ—ଚିରି ଯେଉଁଠି ଅବାଗିଆ ହୋଇଥିଲେ ବି ରଫୁ କରି ମିଶାଇ ଦିଏ ।

ମୀରା ଦିନେ ହନିଫ୍ ବୁଢ଼ା ପାଖେ ଫୁସ୍ ଫୁସ୍ ସ୍ୱରରେ କାକୁତି କଲା—ଚାଚା, କେଉଁଠି ଭଲ ପାଉଥିଲେ, ଦଣ୍ଡେ ନ ଦେଖିଲେ ବାଇଆ; ଏବେ କଥାକେ କଥାକେ ଚିଡ଼୍ ଚିଡ଼୍ ହୁଅନ୍ତି, ମାର୍ ନ ମାର୍ । ଆମ ଦିହିଁଙ୍କ ମନକୁ ଚିରି କିଏ ଦି'ଖଣ୍ଡ କରିଦେଲା, କିଛି ଜାଣେ ନାହିଁ, ଟିକେ ରଫୁ କରିଦେଇ ପାରିବ, ଚାଚା ?

ବୋବା ପରି ଦୁହେଁ ଦୁହିଁଙ୍କୁ ଚାହିଁ ରହିଲେ ।



## କିଏ ଆଉ ମୋର ବଦ୍‌ଖିଆଲକୁ ସମ୍ଭାଳିବ ?

ଏଣେ ନର୍ସ ଡ୍ୟୁଟି, ତେଣେ ଘରକରଣା ଖଟଣି; ଝିଅ ପରେ ଝିଅ—ଦୁଶ୍ଚିନ୍ତା; ସ୍ୱାମୀ ଅବୁଝା; ତାର ଝୁଙ୍କ୍—ସ୍ତ୍ରୀ ରାନ୍ଧିବ, ବାଢ଼ି ଦେଲେ ଖାଇବ । ଏଥିରେ ତାର ରୋମାଞ୍ଚ, ଆନନ୍ଦ । ହାଣ୍ଡିସ୍ତ୍ରୀ, ପେଟକୁ ଚିପି ଚିପି ସ୍ତ୍ରୀ କାର୍ଯ୍ୟ କରେ, ଉଠୁଥିବା କୋହକୁ ଚିପି, ମୁହଁରେ ହସ ଫୁଟାଇ ।

ଆନାସ୍ଥେସିଆ ଡୋଜ୍ ବେଶୀ ହେଲା କି କଣ, ଅପରେସନ୍ ପରେ ସ୍ତ୍ରୀର ଆଉ ଚେତା ଫେରିଲା ନାହିଁ ।

ଛଅଟି ଝିଅ ଆଉ ଗୋଟା ସଂସାର ମୁଣ୍ଡରେ ବୋଝ ହୋଇ ପଡ଼ୁଥିବା ବେଳେ ସ୍ୱାମୀ ବିକଳ ହୋଇ କହୁଥିଲା—କିଏ ମୋର ବଦ୍‌ଖିଆଲକୁ ସମ୍ଭାଳିବ ……କିଏ……



## ଯେତେ ଟଙ୍କା ସେତେ ସୁଖ ?

ଏଠି କିଏ ଏକା ? ସାରା ପୃଥିବୀରେ ସେଇ ଗୋଟାଏ ଗୀତ; ପାଗଳ ପରି ଲୋକେ ଟଙ୍କା ପଛରେ ଧାଇଁଛନ୍ତି; ବିଶ୍ୱାସ—ଟଙ୍କା ଦେଇ ସବୁ ସୁଖ କିଣି ହେବ, ଯେଉଁଠି ଚରିତ୍ରହୀନ ମଣିଷ ହେଲେ ବି ଦେବତା ପରି ଷୋଡ଼ଶୋପଚାରରେ ପୂଜା ପାଇ ହେବ । ଅହୋରାତ୍ର ଭୋଗବିଳାସରେ କିଞ୍ଚିତ୍ ମାତ୍ର ତ୍ୟାଗ କରି ଦାନବୀର ବୋଲାଇ ହେବ ।

ଯାହାର ବହୁତ ଅଛି, ସେ ଆହୁରି ବହୁତ ଲୋଡ଼େ, କେତେ ବହୁତ କେହି କହି ନ ପାରେ । କିନ୍ତୁ ସେଥିଲାଗି କେତେ ତଳକୁ ଖସିବାକୁ ପଡ଼େ, କେତେ କୁ-ଆଚେଷ୍ଟା, ଜାଲିଆତି କରିବାକୁ ହୁଏ, ତାହା କିଏ କାହାକୁ କହେ ?

ସତରେ ଧନ ଯଦି ସବୁ ସୁଖର ହେତୁ, ଓଭରସିଅର୍ ମହାନ୍ତିଙ୍କର ଏ କଣ ହେଲା ?

ଅନେକ ଜମି, ଅନେକ ଜମା, ଅନେକ କୋଠାବାଡ଼ି, ସହର ଆଉ ମଫସଲରେ ।

ଜିପ୍, କାର୍ ଆଉ ମାଲବୁହା ଟ୍ରକ୍ ।

ଏ ତ ଧନ ! ଜନ ? ଛୁ ଝିଅ !

ଖର୍ଚ୍ଚର ଦୁଆର ଗହାସାହାଣ ମେଲା । ଦେବାଳିଆ କରିବେ ନା କଣ ?

ବୁଢ଼ା କୋଳକୁ ପୁଅ—'ଆହା ମୋ ନନ୍ଦ କୋଳେ ଗୋବିନ୍ଦ !' ତାପରେ ପୁଣି ପୁଅ—ବାଃ ।

ପୁଅ ଯୋଗା—ସବୁ ନେଇ ଆଣି ଥୋଇବ, ଧନ ବଢ଼ାଇବ ।

ଆରେ—ଆରେ ଏ କଣ ? ସେ ହେଲା ବାଇଆ ! ସାନଟା ମୂକ ! କପାଳ ଆଉ କେମିତି ଫାଟେ ?

ଦିନେ ମାଷ୍ଟ୍ରଙ୍କଠୁ ମାଡ ଖାଇ ନ ଥିଲି । ସେ ଗୋଟେ ବେତ ଧରି ନାଚୁ ଦେଇଯାଉଛି; କାନ୍ଦିବ ନା ମୂକ ହୋଇଯିବ ?

କେତେ ତ ପାପଧନ ଗଦାଉଛନ୍ତି, କାହାର କିଛି ହଉନାହିଁ; ଖାଲି ମୋରି କପାଳକୁ !

ନା ମୁଁ କରୁଚି ପ୍ରାୟଶ୍ଚିତ୍ତ ସବୁ ଯଜମାନଙ୍କ ପୁରୋହିତ ହୋଇ ?



## କ୍ଷୁଧ

ଜମିଜମାହୀନ ଭାଗଚାଷୀ ଜଣେ । ଗୋଡ଼ ଭାଙ୍ଗି ଛୁଡ଼ା ହେଲା—ଏ ମହାଜନ, ସେ ସାହୁକାର, ରାସ୍ତା କାନ୍ଟ୍ରାକ୍ଟି, ଦାଦନ ଶ୍ରମିକ ଯୋଗାଉଥିବା ଠିକାଦାର, ହୁ ହୁ ହୋଇ ବଢ଼ି ଯାଉଥିବା କେତେ ବାବୁଙ୍କ ଦୁଆରେ । ଦୁର୍ ଦୁର୍, ମାର୍ ମାର୍ କଲେ । "ଝିଅ କଣ ମୋର ଅବାହାଡ଼ୀ ରହିବ ? କାହିଁକି ତାହେଲେ ଭଗବାନ୍ ଦେଲେ ଏ ରତ୍ନଟିକି ଏଡ଼େ ନଥିଲା ଘରେ ?" ମଧୁ ଜେନା ଝୁଙ୍କି ବସିଲା ।

ମଧୁ ମିଶ୍ର ଇଞ୍ଜିନିୟର; ପାଞ୍ଚ ହଜାର ଟଙ୍କା ଧାର୍ ଗୃହାନ୍ତ, ଖପର ଏ ସମ୍ବାଦ ପ୍ରଘଟ ହେଲା କି "କାଲ ଠାର କାଲ ମାଆ ଜାଣିଲା ?" ଧାର୍ ଦେବାକୁ କ୍ୟୁ ଲଗିଗଲା ତାଙ୍କ ଦୁଆରେ, ଓଭରସିୟର୍, ଜାନ୍‌ତକ୍ଟି, ଠିକାଦାର ଆଉ କେତେ କଏଙ୍କ ମଧ୍ୟରେ । ସମଦର୍ଶୀ ମଧୁ ମିଶ୍ରେ ଭାବ ବସିଲେ—କାହାଠୁ ନେବେ, କାହାକୁ ଛାଡ଼ିବେ ।



## ରୂପର ଜାଲଟା ଯେ କଲକାଙ୍କୁ ଧରେ...

କାହିଁ ନ ଦେଖିଲା ରୂପସୀ ଜଣେ, ଡାହାଣା ଆଖିକି ଝଲସାଇ ଦଏ ତାର ସୁଚକଣ ଆଉ ରୂପର ଚନ୍ଦ୍ରଉଦଥା । ଅନ୍ଧାରଆ, ନିର୍ଜନ ଗଳରେ ଜଣେ ସୁବେଶିତ ଯୁବକର ହାତକୁ ହଠାତ୍ ଧରିପକାଇ ଚୁମ୍ବନ ଭଙ୍ଗୀରେ ମୁହଁକୁ ଗାଲ ପାଖକୁ ନେଇ କାନରେ ଫୁସ୍‌ଫୁସ୍ କହିଲା—ହଜାରେ ଟଙ୍କା ଦଅ, ନଇଲେ ମୋ ଇଜ୍ଜତ ନେଲ ବୋଲି ପାଟି କରିବି—ଯଦି ବଦ୍‌ନାମକୁ ଭୟ ଥାଏ, ଶୀଘ୍ର—ଶୀଘ୍ର ।

ଯୁବକ ଗ୍ରୁନିଆଁ ହୋଇ ନଯାଇ କହିଲା—ଯାହା କଲେ ସଂସାରରେ ବଦ୍‌ନାମ୍ ହୁଏ, ମୁଁ ସବୁ କରି ସାରିଛି । ବଦ୍‌ନାମକୁ ଆଉ ମୋର ଭୟ ନାହିଁ । ସେଉଁ ଯୁବତୀ ଯୁବକ ଧର୍ଷଣ କରେ, ରୂପର ରୂପେଲି ବୁଢ଼ିଆଣୀ ଜାଲରେ କଲକାମାନଙ୍କୁ ଧରେ, ନିସ୍ପୃହା, ଦୁର୍ବଳା ବୋଲି ଆଳରେ, ସେମାନଙ୍କ ମୁଣ୍ଡରେ ସବୁ ପାପ ନଦି ଦଏ, ଭେଣ୍ଡାକୁ ମେଣ୍ଢା କରେ, ସେଇ ଜ୍ଞାନଦେଈଙ୍କୁ ଧରିବା ଲାଗି ଏବେ ନିଯୁକ୍ତ, ପୁଲିସ୍‌ର ଏକାନ୍ତ ବିଶ୍ୱସ୍ତ ମୁଁ ।

ଚାଲ୍ ଥାନାକୁ ।



## ଭିଜୁଥିବ ଆଲ୍ଲା ଆଲ୍ଲା

ଆଜି କ୍ୟୁ, କାଲି କ୍ୟୁ, ପ'ର ଦିନ କ୍ୟୁରେ ବି ଫେଲ୍ ମାଇଲା ।

ସବି ପାଡଗଲା ଉସ୍‌ମାନ୍ ଖାଁ—ଯାଲ କି ଝକ୍‌ମାରି ଏ ସିନେମା ଦେଖା !

କଳାବେପାରୀଙ୍କ ଗୋଟା ଗୋଟା ଟିକେଟ୍ ବିକି ହାରାମ୍‌ଜାଦା ଆମ ମୁହଁକୁ ଟିକିଏ ବି ଚାହିଁଲା ନାହିଁ । ଉସ୍‌ମାନର ଆଖି ଲାଲ୍ ହୋଇ ଉଠିଲା ।

ସ୍ପେସାଲ୍ ସିଟ୍‌ରେ ବସି ସିନେମା ଦେଖୁ ଦେଖୁ ମଦ ନିଶାରେ ଢୁଳାଉଥିବ ମାଲିକ, ଯୋର୍ କା ବଖ୍ସ । ଉସ୍‌ମାନର ଆଖି ଆହୁରି ଲାଲ୍ ହୋଇ ଉଠିଲା । ଲୋକେ ଚେନାଚୁର୍ ଗ୍ରେବାଉଥିବେ, ନବାବ୍ ପରି ଆଉଜାରେ ସ୍ଵାଡ଼େ ସିଆଡ଼େ ଅନାଉ ଥିବେ । ଇର୍ଷାରେ ଜଳି ଉଠିଲା ଉସ୍‌ମାନ୍—ଶାଳା ମକ୍କା ନିକାଲ୍ ଦଉଚ, ଏକା ଥରେ ଆଲ୍ଲା ଆଲ୍ଲା ଭଜୁଥିବ ।

ଯେମିତି କସ୍‌କା ସାଦ୍, ଏ ସିନେମା ହାଉସ୍‌ରେ ସାଲା କ ଗ୍ରେସ୍‌ନ ! ସବୁ ଏକା ଥରେ ଧୂଆଁ କରି ଉଡ଼ାଇ ଦଉଚ !

ଏ କଥା କହୁଁ ନ କହୁଁ ତା ହାତବୋମା ଫୁଟିଲା 'ଡ୍ରୁ' ।

ଉସ୍‌ମାନ୍‌ର ଗଣ୍ଡିମୁଣ୍ଡ, ହାତଗୋଡ଼ ଏଠିସେଠି ଖଣ୍ଡ ଖଣ୍ଡ ହୋଇ ପଡ଼ିଲା ।

●

## ସ୍ତ୍ରୀ—ସ୍ତ୍ରୀ—ସ୍ତ୍ରୀ; ପ୍ରିୟା ?

ହମାଦ୍‌ବାବୁ ଆଜି ମରୁଛନ୍ତି । ପାଖରେ ପାଣି ଟୋପାଏ ଦେବାକୁ କେହିନାହିଁ ।

ଜୀବନରେ ବହୁ ସ୍ତ୍ରୀ ବିବାହ କରିଛନ୍ତି, କେବଳ ଆସ୍ୱାଦର ବୈଚିତ୍ର୍ୟ ପାଇଁ ।

ବାପା ଝିଅ ଦେଇଛନ୍ତି, କନ୍ୟା ଦାୟରୁ ମୁକ୍ତ ହେବା ଲାଗି; 'ଦେଲା ନାଶ ହେଲା ପାର' ହୋଇ ମଧ୍ୟ ଦୂରେଇ ରହିଛନ୍ତି ।

ଜମିବାଡ଼ି କିଛି କିଛି ନେଇ ବିବାହିତାମାନେ ଯେଝା ଦୁଃଖଧନ୍ଦାରେ ଲାଗିଛନ୍ତି, ଲଗାମ୍‌ଛଡ଼ା ଜୀବନ । ନବନବ ଆସ୍ୱାଦ ଚାଖିବାରେ ତୃଷ୍ଣା ଏବେ ତୃପ୍ତ ହୋଇଥିଲା କି ନାହିଁ, ହମାଦ୍‌ଙ୍କୁ ଜଣା; କିନ୍ତୁ ବାର୍ଦ୍ଧକ୍ୟର ଅସାମର୍ଥ୍ୟ ତାଙ୍କୁ ଏ ଦିଗରୁ ନିବୃତ୍ତ କଲା ।

ବିବାହ ନିଶାରେ ସବୁ ସମ୍ପତ୍ତି ବରବାଦ୍ କରିଥିଲେ ସେ । ସାଧାରଣ ଜମିମାଲିକର ଗୋଟାଏ ରାଜ ଅନ୍ତଃପୁର ! ହତା ଭିତରେ ହାଟବଜାରର କୋଳାହଳ । କିନ୍ତୁ ମାରାତ୍ମକ ନିର୍ଜନ ପରିବେଶ ମଧ୍ୟରେ ତାଙ୍କ ଶ୍ୱାସ ବନ୍ଦହୋଇ ଆସୁଥିଲା । ପାଦରେ ଟିକିଏ କଅଁଳ ହାତ ବୁଲାଇବାକୁ, କି ଶେଷ ଢୋକ ମହାର୍ଘ ତୋରାଣି ଟୋପେ ଦେବାକୁ ପାଖରେ କେହିନାହିଁ ।

ତାଙ୍କର ଏକ୍-କୋଡ଼ିଏ-ପଚିଶ-ଅଶୀ ସ୍ତ୍ରୀ, କିନ୍ତୁ ଜଣେହେଲେ ପ୍ରିୟା ନଥିଲା । ସମସ୍ତଙ୍କୁ ପ୍ରିୟା କରିବା ଚେଷ୍ଟାରେ ସେ ଜଣଙ୍କର ବି ପ୍ରିୟ ହୋଇପାରି ନ ଥିଲେ ।

ଭୋଗବାସ୍ନ ଶେଷ ନିଃଶ୍ୱାସ ତ୍ୟାଗକଲା, ଦରଭଙ୍ଗା କୁଡ଼ିଆ ସ୍କୁଲକୁ ଉଠାଇ ଯଜାଇ, ଏକାନ୍ତ ଏକୁଟିଆ, କାନ୍ଦୁଁ-ଅଇଲା, କେହି—ନ-ଥିଲା ଭବରେ ।



## ଆଉ ସମ୍ଭାଳି ପାରୁ ନାହିଁ

ଚମକି ଉଠୁଥାଏ ମଣିନାଗ ପାହାଡ଼ର ସ୍ତର, ଭୁହାକୁ ଭୁହା ପବନରେ । ତିନି ଜଣରୁ ଜଣକୁ ବନ୍ଧନରୁ ମୁକୁଳାଇ ହନ୍ତା ଦୁଇ ଗୋଡ଼କୁ ଧରି ବୁଲାଇ ବୁଲାଇ ପିଟିଦେଲା—ଏକ୍, ଦୁଇ, ତିନିଥର । ଦଶଜଣ ଗଛରେ ବନ୍ଧାହୋଇ ଲୁହବର୍ଷା ଆଖିରେ ଦେଖୁଥାନ୍ତି ବଡ ଭାଇର ଦଶା । ତାସଙ୍କ ଆଖିରୁ ନିଆଁ ଝୁଲ ଝଡ଼ିଲ୍ପପର ଦଶୁଥାଏ । ମଣିନାଗ ଠାକୁରାଣୀ ଏଡ଼େ ଏଡ଼େ ଆଖିରେ ଚାହିଁଥାନ୍ତି ।

ବଡ଼ ପରେ ମହିଷଁର ପାଳି, ସବା ଶେଷରେ ମାନବ । ଏ ବଳି ପାଇଲେ କି ନାହିଁ, ସେ ଜାଣନ୍ତି । ସ୍ୱତାସର ଏ ରକ୍ତ ପଠାହେଲା କଲିକତା କାଳୀଙ୍କୁ । ବାନ୍ଧୁତ ରକ୍ତର ସ୍ୱାଦ ପାଇଲେ କି ନାହିଁ, ସେ ଜାଣନ୍ତି ।

ମଣିନାଗ ଠାକୁରାଣୀ ଏଡ଼େ ଏଡ଼େ ଆଖିରେ ଚାହିଁଥାନ୍ତି—ଧର୍ମ ନାମରେ କି ଅଧର୍ମ କରେ ଏଇ ନୃଶଂସ ଦ୍ୱିପଦ, ଦେବତା ମୁଣ୍ଡରେ ଜପାଇ ନିଜର ସବୁ ପାପ ନଦଦିଏ ।

ଯେ ସାତ ସମୁଦ୍ରକୁ ଚଳୁ କରିଦିଏ, ତା ଶୋଷର ଶେଷ କାହିଁ ? ତା ବିକଟ କ୍ଷୁଧାକୁ ଏ କ୍ଷୁଦ୍ର ପୃଥିବୀ ଶାନ୍ତ କରି ପାରିବ ବା କାହୁଁ ?

ମଣିନାଗ ଠାକୁରାଣୀ ଏଡ଼େ ଏଡ଼େ ଆଖିରେ ଦେଖୁଥାନ୍ତି—ସ୍ୱାର୍ଥ ସିଦ୍ଧି ଲାଗି ମଣିଷ କି ଅକର୍ମ ନ କରେ ! କେତେ ତଳକୁ ବା ନଯାଏ !

ମୁଁ ତାର କି ବିପଦ ଦୂର କରିପାରିବି ? ନିଜଲାଗି ପ୍ରତିଦିନ ସେ ଯେତେ ବିପଦ ସୃଷ୍ଟି କରେ, ତାହାର ଯେ ଅନ୍ତ ନାହିଁ ।

ସେ କହେ ହିଁ ନିଜର ବଳୀୟାର ଶତ୍ରୁ ' ମୋ ମୁଣ୍ଡରେ ତା ପାପର ଭାର, ଏ ଚୁଆ, ଚନ୍ଦନ, ଫୁଲହାର ଓ ଲେପିତ ରଗରୁ ସ୍ୱାର୍ଥର ଯେଉଁ ଉତ୍କଟ ଗନ୍ଧ ବାହାରୁଛି, ତାକୁ ମୁଁ ଆଉ ସମ୍ଭାଳି ପାରୁନାହିଁ ।'



## ଅନ୍ଧୁଣୀ

ଭଗବାନ୍ କାହିଁକି ଏ ଅନ୍ଧୁଣୀକି ଜନ୍ମଦେଲେ ଏଡ଼େ ଗରିବ ଘରେ !

ଦୁଃଖିନୀ ଯୁବତୀ ଭିକାରୁଣୀଠାରୁ ରାସ୍ତାଧାର କୁଡ଼ିଆରେ ରାତିଅଧରେ ସୁଖର ଶୁଳ୍କ ଆଦାୟ କଲେ, ଯୋଉମାନେ ବୋଲାନ୍ତି ସଂସାରରେ ସୁଖୀ !

ରାତି ଅଧରେ ରାସ୍ତାଧାରରେ ଜାତ କନ୍ୟାଟି ଏ କଳଙ୍କକୁ ଘୋଷଣା କଲା । ଘୋର ଚିତ୍କାରରେ ।

ଯୋଉଠୁ ଏସେନ୍ସ ବାସନା ଛୁଟୁଥିଲା ବୁଲିଗଲାବେଳେ, ସେଠୁ ବଦ୍‌ନାମ୍‌ର ଉତ୍କଟ ଗନ୍ଧ ବାହାରିଲା ।

ତାହା ଦୂର କରିଦେବା ଲାଗି ରାତି ଅଧରେ ଏ ଦୁଇଟି ଜୀବନ ଲିଭାଇ ଦିଆହେଲା ।



## କାରଣ ସେ ନିଜେ ବୁଝି ନ ଥିଲେ

ଯେତିକି ଥିଲା, ବେଶ୍ ଚଳିଆସୁଥା ସନ୍ତୋଷରେ, ଶାନ୍ତିରେ ।

ଏ ଯୁଗ ଅସନ୍ତୋଷର; 'ଯେତେ ପାଇଲେ ବି ଶାନ୍ତି ନାହିଁ । ଲୋକେ ହୁ ହୁ ହୋଇ ବଢ଼ିଯାନ୍ତି, ବଢ଼ି ପରି ମାଡ଼ିଯାନ୍ତି ।

କଣ ଟାଏ ହେବ ! ନୂଆ ବାହାରୁଥିବା ନଈ କଣ ଘାଟ ଅଘାଟ ମାନେ ?

ପଇସା ସୁଅ ମୁହଁରେ ଆସିଲା ।

ସୁଅ ମୁହଁରେ ବୁଲିଲା, ବନ୍ଧୁ ବାନ୍ଧବ ମେଳରେ ଝଣାପାଣିରେ ।

ଉପୁରି ଆୟ ବଦଳେ ଜଡ଼ାତେଲ ମେଣ୍ଟାବାଲା ।

ଚାକିରି ସରିଲା । ମଜ୍‌ଲିସ୍‌ର ଦୋସ୍ତସବୁ ଆଢ଼େଇଗଲେ । କେବଳ ବଞ୍ଚି ହୋଇ ରହିଲା ନିଶା, ଦେବାଳିଆ ହେଲା ପରେ ବି ।

'ବାପ୍‌ସେ ବେଟା ଜ୍ୟାଦା !' ବେଟା ଯେତେବେଳେ ରାସ୍ତାରେ ପଡ଼ିଲା, ବାପା ଘରକୁ ଉଠାଇ ନେଇ ନିଶା ଛୁଟିଲା ପରେ ନୀତିବାକ୍ୟରେ କେତେ ବୁଝାଇଲେ । କିନ୍ତୁ ସବୁ ପାଣି ଫାଟିଲା । କାରଣ ସେ ନିଜେ ବୁଝି ନଥିଲେ ।



## ନାଆଁ—ରଙ୍ଗ—ଚୂଲୀ ପରେ ?

'କଣ ?'

'ଝିଅ'

'ନାଆଁ !'

'ଏଥର ?'

'ଝିଅ'

'ରଙ୍ଗ !'

'ଏଥର କଣ ?'

'ଝିଅ'

'ଚୂଲି !'

ଚତୁର୍ଥ ଥର ମାଆ ଦୁଃଖ ପାଇଲା, ପିଲାଟିଏ ବି ହେଲା । ପ୍ରଶ୍ନ ନଥିଲେ ବି ବଡ଼ ପାଟିରେ ଉତ୍ତର ଦିଆଯାଇ ଥିଲା—

ପୁଅ—ପୁଅ—ପୁଅଟିଏ……

ସେ ପୁରକୁ ଯିବା ଆଗରୁ ଏ ଉତ୍ତର ମାଆ ଶୁଣିଥିଲା କି ନାହିଁ, କିଏ ଜାଣେ ?



## କେମିତି ? ଆଲୋ କାହିଁକି ?

ଖଣା ପାଗଳ ଡାକ୍ତର, ପାଗଳଙ୍କୁ ଦେଖି ଦେଖି ପାଗଳ । କେତେବେଳେ ଝାନ୍ତି ପରି ମୁଖର । ମାସେ ଦୁଇ ମାସରେ ଥରେ ସକ୍ ଦିଏ । ବାଣୀ ଅଧ୍ୟାପିକା, ବୟସରେ କନିଷ୍ଠା, କଲେଜକୁ ଗଲାବେଳେ ବାଟରେ ଭେଟେ—

'ଖଣା ଅପା ନମସ୍କାର ।'

'ନୀରବ'

'ଖଣା ଅପା ନମସ୍କାର ।'

'ନୀରବ ।'

'ବୀଣା ଅପା ନମସ୍କାର ।'

'ନୀରବ ।'

ଏମିତି ତିନିଥର ଘଟିଲା ପରେ ବାଣୀ ଭାବିଲା—ପାଟଳୀ କୋଉ ଭାବ ରାଜ୍ୟରେ ବୁଲୁଥିବ, ନମସ୍କାରଟା ନଷ୍ଟ କରିବ କାହିଁକି ?

ଦେଖି ନ ଦେଖିଲାପରି ଏଥର ବାଣୀ ଆଗେଇ ଚାଲିଲା; ପଛରୁ ହଠାତ୍ ବିସ୍ଫୋରଣ—ବାଣୀ···ଆଲୋ ବାଣୀ···ତୁ କେମିତି···ଆଲୋ କାହିଁକି ?



## କାହାକୁ ଏ କଥା କହିବି ? କିପରି ?

'ମୋ ଘର ଭାଙ୍ଗିଯିବ
ପିଲାଛୁଆ ଭାସିଯିବେ
ସ୍ତ୍ରୀ ଶେଷ ଅବସ୍ଥାରେ
ତା ଜୀବନ ରକ୍ଷା କର,
ତୁମର ଅନେକ ଧର୍ମ ହେବ ମା' ।
'ରାତି ପ୍ରାୟ ଦଶଟା, ଗୋଳମାଳ କରନାହିଁ
କ୍ଲାନ୍ତ ମୁଁ, ସାରା ଦିନ ପରିଶ୍ରମରେ;
ସକାଳେ ଯାଇ ଦେଖି ଆସିବି ।'

'ମୋ ଘର ଉଚ୍ଛନ୍ନ ହୋଇଯିବ
କଥା ସରିଯିବ ।
ତୁମ ଋଣ ଯଦି ଏ ଜନ୍ମରେ ଶୁଝି ନ ପାରିବି,
ଆର ଜନ୍ମରେ ଲେଉଟିଆ ପଠାଳି ହୋଇ ଶୁଝିବି ।
ରାତି ଯେତେ ହେଲେ ବି ତୁମର କି ଭୟ ଅଛି ମା ?'

× × × ×

ନିର୍ଜନ ତୋଟା, ଘନ ଅନ୍ଧାର
ପୁଅ ମୁଖା ପିନ୍ଧି ଯେଉଁମାନେ ଆସିଥିଲେ,
ମୁହୂର୍ତ୍ତିକେ ସେମାନଙ୍କ ଗତିବିଧି ବଦଳିଗଲା !
ଲୁଣ୍ଠନ, ଧର୍ଷଣ !
ଚେତା ହେଲା ବେଳକୁ ତାରୁଣୀ ଦେଖିଲା—
ଆକାଶରେ ସିନ୍ଦୁର ଫାଟିଚି
ନା ଏ ତାର ନିଜ ରୁଧିର ?
'ଧର୍ମ କୋଉଠି ? ମଣିଷ କୋଉଠି !
କାହାକୁ ଏ କଥା କହିବ ? କିପରି ?'



# ପ୍ରକୃତିରେ ହାରିଗଲା

ଆଇନ୍‌ର ଅନେକ ସୂତ୍ର, ଅନେକ ଓଲଟ ପାଲଟ ବ୍ୟାଖ୍ୟା, ଉପର ତଳେ ଅନେକ ବ୍ୟାଖ୍ୟାକାରୀ, ଚାଲାକ-ଚତୁର, ଜୋଡ଼ା ଚଢ଼େଇର ପର ଗଣିଦେବା, ଛେନାରୁ ଛେପା ଛଡ଼ାଇବା ଲୋକ, ଯୋଉମାନେ ଆଇନ୍‌କୁ ବାଟ କାଟି ଯାନ୍ତି, ଧର୍ମକୁ ଆଖି ମିଟିକା ମାରି, କଳାକୁ ଧଳା କରିବାର ଇନ୍ଦ୍ରଜାଲ ବିଦ୍ୟାରେ ପାରଙ୍ଗମ ।

ଗୋଟାଏ କିଛି ଝିଅ ବାହାର କରି ମନ୍ଦିରଧର ଓକିଲ ଖଲାସ୍ କରେ ଘରପୋଡ଼ିଆକୁ, ଚୋର ଡକାୟତକୁ, ହତ୍ୟା ଆଉ ହରଣଚାଲ୍‌କାରୀକୁ ମଣିଷମାରୁ ଆଉ ପିଲାଚୋରକୁ ।

ଖାଦ୍ୟରେ ବିଷ ମିଶାଏ ଯେ, ଧର୍ଷଣ ଲୁଣ୍ଠନ କରେ ଯେ, ଏମିତିକି ଧମନୀରୁ ରକ୍ତ, ଆଖିରୁ କଜ୍ଜଳ କାଢ଼ି ନିଏ ଯେ, ତାଙ୍କୁ କିଛି ନା କିଛି ପାଠ ନା ଶାଠ ବାହାର କରି ଖଲାସ୍ କରିଦିଏ ।

ସବୁଠି ଜିତାପଟ, ସବୁଆଡ଼ୁ ଅର୍ଥବୃଷ୍ଟି, ଅର୍ଥସବୁ ତୁଳସୀ ପତ୍ର ପକାଇ ରଖେ, ଭବିଷ୍ୟତ ବଂଶଧରଙ୍କ ପାଇଁ । ରୁଧିର ଫୁଲାଇ ବାଟ ଚାଲେ ଇନ୍ଦ୍ରଚନ୍ଦ୍ର ନ ମାନି ।

ତା ଆକାଶଛୁଆଁ କୋଠା ଉପରେ ଦିନେ ହାଓ୍ୱା ଖାଇଲା ବେଳେ ଭୟ-ଙ୍କର ରୂପରେ, ହଠାତ୍ ଦିନେ ପକ୍ଷାଘାତ ଅକାଳରେ, ଅବେଳରେ ଏ କିଏ ?

'ଜୁଲମ୍', 'ଅନଧିକାର ଚର୍ଚ୍ଚା'—ବୋଲି ପ୍ରତିବାଦ କରିବା ଆଗରୁ ହୃଦ୍‌ରୋଗର ତୀବ୍ର ଆକ୍ରମଣରେ ନିଜର ଦିଶ ହଜି ଦେଲେ । 'ଜାମିନ୍‌ରେ ଛାଡ଼', 'ମହଲତ ଦିଅ', 'ଖଲାସ୍ କର'—କିଛି ହେଲେ କହିବାକୁ ଜିଭ ଲେଉଟିଲା ନାହିଁ । ଆଇନରେ ସବୁ ଧାରା ପାଶୋର ଗଲା, ଜବରଦସ୍ତି ଆଗରେ ମୁଣ୍ଡ ନୁଆଁ-ଇଲା, ଯାହା ଜୀବନରେ କେବେ କରିନାହିଁ ।

ଶେଷ ଶିଶୁଟିଏ ପରି ବଡ଼ ଅସହାୟ ଭାବରେ ଶୋଇ ପଡ଼ିଲା ସେ ମହାନ୍ ଜୀବନ ବିଜୟୀ ।

ଧନର ପାହାଡ ଉପରେ ଛିଡ଼ା ହୋଇଥିଲା ଯୋଉ ମରୁଆଳି ଉତ୍ତରାଧିକାରୀ—ଏକ ସ୍ମୃତି ସଭାରେ ଘୂରି ଘୂରି କହିଲେ—ଜାତି ତାଙ୍କର ସ୍ମୃତି ରକ୍ଷା କରିବା ଉଚିତ ।

ତାର ଈଷଦ୍ ପ୍ରତିବାଦ କରି ଜଣେ ଜାତିପ୍ରେମୀ କହିଲେ—ସେ ଜାତି ଲାଗି କଣ କରିଛନ୍ତି ? ତାଙ୍କୁ ଯଦି କିଏ ସ୍ମରଣ କରିବାର ଥାଏ, ସେ ତାଙ୍କର ପୁଅ, ଯେ ବିନା ପ୍ରୟାସରେ ଲକ୍ଷ ଲକ୍ଷ ଟଙ୍କାର ମାଲିକ ହୋଇ ବସିଛନ୍ତି ।

ପୁଅ ପିତାଙ୍କର ସ୍ମୃତି ରକ୍ଷା କରିବେ ବୋଲି ପ୍ରତିଶ୍ରୁତି ଦେଲେ; କିନ୍ତୁ ତାର ହେଜ ବା ହୋସ୍ ହେଲା ନାହିଁ, ଯାହା ମାତାଲର ସହଜରେ ହୁଏନାହିଁ । ସେଦିନ ଲୋକେ ବୁଝିଲେ—ମନ୍ଦର ମୁଖ ପାଖରେ ପ୍ରକୃତରେ ହାରିଗଲା ।

